# କାଂଚିକାବେରୀ

ବା

## ପଦ୍ମାବତୀ

(ନାଟକ)

ରାମଶଙ୍କର ରାୟ


ବୁକ୍ସ ଏଣ୍ଡ ବୁକ୍ସ
ବିନୋଦବିହାରୀ, କଟକ-୨

ପ୍ରକାଶକ

ବୁକ୍ସ ଏଣ୍ଡ ବୁକ୍ସ

ବିନୋଦବିହାରୀ

କଟକ-୭୫୩୦୦୨

ମୁଦ୍ରକ

ଷ୍ଟାର ପ୍ରିଣ୍ଟିଂ ଓ୍ୱାର୍କସ୍

କଟକ-୭୫୩୦୦୧

ମୂଲ୍ୟ — ଷ୍ଟର ଟଙ୍କା

# ଗ୍ରନ୍ଥ ପ୍ରବେଶ

ଊନବିଂଶ ଶତାବ୍ଦୀର ଶେଷ ତିନିଦଶକ ଆଧୁନିକ ଓଡ଼ିଆ ସାହିତ୍ୟର ଜନ୍ମକାଳ । ନଅଙ୍କ ଦୁର୍ଭିକ୍ଷର କରାଳ ତାଣ୍ଡବ ପରେ ପରବର୍ତ୍ତୀ ଓଡ଼ିଆ ଜାତିର ନବଜନ୍ମ । ଭାଷାବିଲୋପ ଆନ୍ଦୋଳନ ପରିପ୍ରେକ୍ଷୀରେ ଓଡ଼ିଆ ଜାତିର ନୂତନ ଆତ୍ମପ୍ରତ୍ୟୟ, ବ୍ରାହ୍ମ-ଆର୍ଯ୍ୟସମାଜ-ଖ୍ରୀଷ୍ଟିୟାନ ଧର୍ମଧାରାର ଅନୁବର୍ତ୍ତନରେ ନୂତନ ସାମାଜିକ ଚେତନା ଓ ସର୍ବୋପରି ପାଶ୍ଚାତ୍ୟ ଶିକ୍ଷାର ବିକାଶ ଓ ପ୍ରସାର ଫଳରେ ନୂତନ ଶିକ୍ଷିତ ମାନସର ପ୍ରସ୍ତୁତିହିଁ ଯଥାର୍ଥରେ ଏହି ସମୟରେ ଆଧୁନିକ ସାହିତ୍ୟ ସୃଷ୍ଟି କରିବାକୁ ପ୍ରେରଣା ଦେଇଥିଲା । ଜାତୀୟତାର ଏଇ ନବ ଅଭ୍ୟୁଦୟ ସ୍ପର୍ଶରେ ଓଡ଼ିଆ ଜାତିର ଅନ୍ତରରେ ସୃଷ୍ଟି ହେଲା ସ୍ୱାଭିମାନ ଏବଂ ଏହି ସ୍ୱାଭିମାନହିଁ ଏ ଜାତିକୁ ନୂତନ-ସାହିତ୍ୟ-ସରଣୀରେ ଗତି କରିବାକୁ ଦେଲା ଦୁର୍ବାର ପ୍ରେରଣା । ଆଧୁନିକ ସାହିତ୍ୟର ବିଭିନ୍ନ ବିଭାଗର ଆଦ୍ୟ ବିକଚ ବିକାଶ ଏହି ସମୟରେହିଁ ସମ୍ଭବ ହୋଇ-ଥିଲା । ଆଧୁନିକ ନାଟକର ଜନ୍ମକାଳ ମଧ୍ୟ ଏହି ସମୟ । ଆଦି ନାଟ୍ୟକାର ଜଗନ୍ମୋହନ ଲାଲ ୧୮୭୭ ମସିହାରେ 'ବାବାଜୀ' ନାଟକ ରଚନା କରି ଆଧୁନିକ ଓଡ଼ିଆ ନାଟକ ରଚନା କରିବାର ପଥକୁ ସୁଗମ କରିଦେଲେ । ଏହା ପୂର୍ବରୁ 'ଗୋପୀନାଥବଲ୍ଲଭ' ନାମକ ଏକ ନାଟକ ରଚିତ ହୋଇ-ଥିଲେହେଁ ଏହାକୁ ପ୍ରକୃତ ନାଟକ କୁହାଯାଇ ନ ପାରେ । ଏହାକୁ ଦକ୍ଷିଣୀ ଯାତ୍ରା ବା ଲୀଳାର ଏକ ନୂତନ ସଂସ୍କରଣ କହିଲେ ଅତ୍ୟୁକ୍ତି ହେବ ନାହିଁ । ୧୮୭୭ ମସିହାରେ 'ବାବାଜୀ' ନାଟକ ଆଲୋଚନା ପ୍ରସଙ୍ଗରେ 'ସମ୍ବାଦ-ବାହିକା'ରେ କୌଣସି ଲେଖକ 'ଗୋପୀନାଥବଲ୍ଲଭ' ନାଟକକୁ 'ନା-ଟକ, ନା-ମିଷ୍ଟ' ବୋଲି ଅଭିହିତ କରିଥିଲେ । 'ବାବାଜୀ' ନାଟକ ରଚିତ ହେବା ପରେ ଓଡ଼ିଆ ନାଟ୍ୟରଚନା କ୍ଷେତ୍ରରେ ଯଥାର୍ଥରେ ଏକ ନୂତନ ଜାଗରଣ ଦେଖାଦେଲା ଓ ମାତୃଭାଷାରେ ନାଟକ ରଚନା କରିବା ପାଇଁ ଆତ୍ମପ୍ରତ୍ୟୟ

ସୃଷ୍ଟି ହେଲା । 'ବାବାଜୀ'ର ନାଟକୀୟତା ସମ୍ପର୍କରେ ବହୁ ମତଦ୍ୱିଧା ଥିଲେହେଁ ଏବଂ "ବାବାଜୀ ନାଟକର ପ୍ରଣେତା ଯେପରି ନାଟକ କାହାକୁ ବୋଲଯାଏ ତାହା ନ ଜାଣି ନାଟକ ଲେଖିବାକୁ ପ୍ରବୃତ୍ତ ହୋଇଅଛନ୍ତି" ଇତ୍ୟାଦ ନାନା ଅଭିଯୋଗ ହୋଇଥିଲେହେଁ 'ବାବାଜୀ' ପ୍ରଥମ ଓଡ଼ିଆ ନାଟକ ଭାବରେ ପ୍ରତିଷ୍ଠା ଲାଭ କରିଛି । 'ସମ୍ବାଦବାହିକା' ମତରେ ଏହି 'ବାବାଜୀ' ନାଟକ ହିଁ ଥିଲା ଦର୍ଶକ ଓ ପାଠକମାନଙ୍କ ପକ୍ଷରେ "ନୂଆ ଫଳ-ସ୍ୱରୂପ" । ଏହି ନୂଆ ଫଳର ଆସ୍ୱାଦନ ପରେ ଓଡ଼ିଆ ନାଟ୍ୟସାହିତ୍ୟରେ ନାଟ୍ୟକାର ରାମଶଙ୍କର ରାୟଙ୍କର ଆବିର୍ଭାବ ଘଟିଲା ଏବଂ ଓଡ଼ିଆ ନାଟ୍ୟ-ଜଗତକୁ ତାଙ୍କର ପ୍ରଥମ ଅର୍ଘ୍ୟ ହେଲା "କାଞ୍ଚିକାବେରୀ" । ୧୮୮୦ ମସିହାରେ ଏହା ରଚିତ ହେଲା ଏବଂ ୧୮୮୧ ସାଲ ଫେବୃୟାରି ମାସ ତା ୭ ରିଖ ସୋମବାର ଦିନ କଟକରେ ଏହା ସର୍ବପ୍ରଥମେ ଅଭିନୀତ ହେଲା ଏବଂ ଇତିପୂର୍ବରୁ ଯାତ୍ରା-ଲୀଳା-ସୁଆଙ୍ଗ-ଗୀତିନାଟ୍ୟ-ଲୋକନାଟ୍ୟ ଆଦି ଉପଭୋଗ କରି ଆସୁଥିବା ଦର୍ଶକମାନଙ୍କର ଚିତ୍ତବୃତ୍ତିରେ ସୃଷ୍ଟି କଲା ଗଭୀର ଆଲୋଡ଼ନ । ସଂସ୍କୃତ-ପ୍ରାକୃତ-ବଙ୍ଗଳା ଓ ଇଂରାଜୀ ନାଟକର ଏକ ମିଶ୍ରିତ ପ୍ରଭାବରେ ଗଢ଼ିଉଠିଲା ଓଡ଼ିଶାର ପ୍ରଥମ ଐତିହାସିକ ନାଟକ 'କାଞ୍ଚିକାବେରୀ' ।

## 'କାଞ୍ଚିକାବେରୀ' ରଚନାର ପ୍ରାଣସ୍ପନ୍ଦନ :

ରାମଶଙ୍କର ରାୟ ମୁଖ୍ୟତଃ ତିନୋଟି ପ୍ରଧାନ ଭାବଧାରାକୁ ନେଇ 'କାଞ୍ଚିକାବେରୀ' ନାଟକ ରଚନା କରିଥିବା ଜଣାଯାଇଥାଏ । ଜାତୀୟତା, ଭକ୍ତି ଓ ନୂତନ ରୁଚିବୋଧହିଁ ଏହି ସମୟର ମୁଖ୍ୟ ପ୍ରାଣସ୍ପନ୍ଦନ । ଭାଷା-ବିଲୋପ ଆନ୍ଦୋଳନ ଫଳରେ ଏକ ନୂତନ ଜାତୀୟଚେତନା ଓଡ଼ିଶାରେ ସୃଷ୍ଟି ହେବାରୁ ଓଡ଼ିଆ ଭାଷା ପ୍ରତି ମମତା ବୃଦ୍ଧି ହେଲା ଏବଂ ଓଡ଼ିଆ ଭାଷାରେ କିଛି ଲେଖିବା ହେଲା ଗୌରବର ବିଷୟ । ଇତିପୂର୍ବରୁ ଓଡ଼ିଶାରେ ଇଂରାଜୀ ନାଟକ ଓ ବଙ୍ଗଳା ନାଟକ ଅଭିନୀତ ହେଉଥିଲା । ଜାତିପ୍ରାଣ ପ୍ରବର ନାଟ୍ୟକାର ରାମଶଙ୍କରଙ୍କର ମନରେ ଏହା ତୀବ୍ର ପ୍ରତିକ୍ରିୟା ସୃଷ୍ଟି କଲା । ତେଣୁ ସେ ନିଜର ପ୍ରତିକ୍ରିୟାକୁ 'ମୁକୁର' ପତ୍ରିକାର ନବମ ଭାଗ

ଦଶମ ସଂଖ୍ୟାରେ ପ୍ରକାଶ କରିଅଛନ୍ତି—"ଯେଉଁ ଭାଷାର କବିତାକୁ ପାନକୃଷ୍ଣ ଦାସ ଓ ଅଭିମନ୍ୟୁ ସାମନ୍ତସିଂହାର ଏତେ କୋମଳ କରିଛନ୍ତି ଯେ, ତାହା ଧରିଲା ମାତେ ରସ ଗଡ଼ି ପଡ଼େ, ସେ ଭାଷାରେ ନିଶ୍ଚୟ ନାଟକ ହୋଇ-ପାରିବ । ଅନ୍ତତଃ ଥରେ ମୁଁ ଚେଷ୍ଟା କରି ଦେଖିବି ।" ଏହାପୂର୍ବରୁ 'ବାବାଜୀ' ନାଟକ ରଚିତ ହୋଇଥିଲେ ମଧ୍ୟ ଏହାକୁ ପ୍ରକୃତ ନାଟକ ରୂପେ ସେତେବେଳେ ଗ୍ରହଣ କରାଯାଇ ନ ଥିଲା । ଏପରିକି ଗିରିଜାଶଙ୍କର ରାୟ 'ଓଡ଼ିଆ ନାଟ୍ୟକଳା'ରେ 'ବାବାଜୀ' ନାଟକ ସଂପର୍କରେ ଲେଖିଛନ୍ତି—"ଏହା ଅତି କ୍ଷୁଦ୍ର ଶିକ୍ଷାପ୍ରଦ ଗୀତନାଟ୍ୟ ଭିନ୍ନ ଆଉ କିଛି ନୁହେଁ । × × × ବାସ୍ତବରେ ଏହି ନାଟକ ଓଡ଼ିଆ ଯାତ୍ରାର ପୁରୁଣାପୂର୍ଣ୍ଣ ସଂସ୍କରଣ ବୋଲି କହିଲେ ଅତ୍ୟୁକ୍ତି ହେବ ନାହିଁ ।" ଅବଶ୍ୟ ଗିରିଜାଶଙ୍କରଙ୍କର ଏହି ଅଭିମତ ଗ୍ରହଣୀୟ ନୁହେଁ । 'ବାବାଜୀ' ନାଟକ ସଂପର୍କରେ ବହୁ ଆଲୋଚନା ହୋଇ ଏହାକୁ ଓଡ଼ିଆ ଭାଷାର ପ୍ରଥମ ନାଟକ ଭାବରେ ଗ୍ରହଣ କରାଯାଇଅଛି । ୧୮୭୮ ମସିହାରେ ରାମଶଙ୍କର କଟକରେ ବଙ୍ଗଳା ନାଟକ ଅଭିନୀତ ହେଉଥିବା ଦେଖିଥିଲେ ଏବଂ ସେହି ପ୍ରତିକ୍ରିୟାରେ ସେ ଓଡ଼ିଆରେ ନାଟକ ଲେଖିବାକୁ ସିଦ୍ଧାନ୍ତ ଗ୍ରହଣ କଲେ । 'ଉତ୍କଳ ପତ୍ରିକା'ରେ ଗୌରୀଶଙ୍କର ରାୟ ସଂସ୍କୃତ ଓ ଇଂରାଜୀ ନାଟ୍ୟତତ୍ତ୍ୱ ଅନୁଯାୟୀ 'ବାବାଜୀ'କୁ ପ୍ରକୃତ ନାଟକ ଭାବରେ ଗ୍ରହଣ କରି ନ ଥିଲେ ଏବଂ 'ଅଚିରେ ପ୍ରକୃତ ନାଟକ' ରଚିତ ହେବ ବୋଲି ଆଶାପୋଷଣ କରିଥିଲେ । ରାମଶଙ୍କର ପ୍ରକୃତ ନାଟକ ରଚନା କଲେ ବୋଲି ସେତେବେଳେ ବିଭିନ୍ନ ମନ୍ତବ୍ୟମାନ ପ୍ରକାଶିତ ହୋଇଥିଲା । ଗିରିଜାଶଙ୍କର ରାୟ 'ଓଡ଼ିଆ ନାଟ୍ୟକଳା'ରେ ଏ ସଂପର୍କରେ ଲେଖିଛନ୍ତି—"ଓଡ଼ିଆରେ ପ୍ରଥମ ନାଟକ ରଚିତ ହେଲା ୧୮୮୦ ମସିହାରେ । ତାହା ପୂର୍ବରୁ ଯେଉଁ 'ବାବାଜୀ' ନାଟକ ରଚିତ ହୋଇଥିଲା ତାହା ବାସ୍ତବରେ ନାଟକ ନୁହେଁ ।" କେବଳ ଏତିକି ନୁହେଁ, ବ୍ୟାସକବି ଫକୀରମୋହନ ସେନାପତି ମଧ୍ୟ 'ଉତ୍କଳଭ୍ରମଣ' ଗ୍ରନ୍ଥରେ ରାମଶଙ୍କରଙ୍କୁ ପ୍ରଥମ ନାଟ୍ୟକାର ଓ ଔପନ୍ୟାସିକ ଭାବରେ ଗ୍ରହଣ କରିଅଛନ୍ତି—

“ହେ ରାମଶଙ୍କର ମୋର ମାନୁଛୁ ମନକୁ
ହୋଇପାର ଖାଲି ତୁମ୍ଭେ ଗଉରୀ ପଛକୁ,
ଓଡ଼ିଆ ନାଟକ ଆଉ ନଭେଲର ଲେଖା
ପ୍ରଥମରେ ତୁମ୍ଭଠାରେ ଗଲା ସିନା ଦେଖା ।”

ସେ ସମୟର ବିଭିନ୍ନ ପତ୍ରପତ୍ରିକାରୁ ତଥା ବିଭିନ୍ନ ବ୍ୟକ୍ତିଙ୍କ ମନ୍ତବ୍ୟରୁ 'ବାବାଜୀ'କୁ ପ୍ରଥମ ନାଟକ ରୂପେ ଗ୍ରହଣ କରାଯାଇ ନ ଥିବା ଦେଖାଯାଏ । ଏପରି କି ନିଜେ ରାମଶଙ୍କର ମଧ୍ୟ ନିଜର ନାଟକ ରଚନା ସମ୍ପର୍କରେ କେତେକ ମନ୍ତବ୍ୟ ପ୍ରଦାନ କରିଅଛନ୍ତି । ଗ୍ରନ୍ଥାବଳୀର ଭୂମିକାରେ ଅଛି— “ସନ ୧୮୭୮ ମସିହାରେ ମୋର ମଧ୍ୟମ ଭ୍ରାତା ହରିଶଙ୍କର ରାୟଙ୍କ ଯତ୍ନ ଓ ଉଦ୍ୟମରେ ଏହି କଟକ ନଗରରେ ପ୍ରଥମେ ନାଟକାଭିନୟ ହେଲା ଓ ଅଭିନୟ ପକାଶେ ବଙ୍ଗଳା ରାମାଭିଷେକ ନାଟକ ନିର୍ବାଚିତ ହୋଇଥିଲା । ମୁଁ କଲେଜରେ ପଢ଼ୁଥିବା ଅବସ୍ଥାରେ ଅଭିନୟ ଦେଖିବାକୁ ଯାଇ ତନ୍ମୟ ହୋଇଗଲି ଏବଂ ମନେ ମନେ ଭାବିଲି ଓଡ଼ିଆରେ ନାଟକ ନ ଥିବାରୁ ସିନା ବଙ୍ଗଳା ନାଟକର ଅଭିନୟ ଏଠାରେ ହେଲା । ସେହି ଦିନରୁ ମୋ ମନରେ ଓଡ଼ିଆ ନାଟକ ଲେଖିବାର ଆକାଙ୍କ୍ଷା ଜାଗ୍ରତ ହେଲା ଏବଂ ଅଚିରେ ଉତ୍କଳର ପ୍ରଧାନ ଠାକୁର ଜଗନ୍ନାଥ ଦେବଙ୍କ ମହିମାସମନ୍ୱିତ ରାଜା ପୁରୁଷୋତ୍ତମ ଦେବଙ୍କ ଚରିତ୍ର ସମ୍ବନ୍ଧର କୀର୍ତ୍ତି କାଞ୍ଚିକାବେରୀ ବିଷୟରେ ନାଟକ ରଚନା କଲି । ଉତ୍କଳ ଭାଷାଭିଜ୍ଞ ମୋର କେତେଜଣ ବନ୍ଧୁ ଓଡ଼ିଆ ଭାଷା କର୍କଶ ଓ ତହିଁରେ ନାଟକ ହୋଇପାରିବ ନାହିଁ ବୋଲି କହି ମୋତେ ତହିଁରୁ ନିରସ୍ତ ହେବାକୁ ଅନୁରୋଧ କରିଥିଲେ; ମାତ୍ର ମୁଁ ତାଙ୍କୁ ଓଡ଼ିଆ କବିମାନଙ୍କର କୋମଳ ଗୀତ ଉଦ୍ଧୃତ କରି ଶୁଣାଇ କର୍ତ୍ତବ୍ୟରେ ଅଗ୍ରସର ହେଲି ଏବଂ ସେମାନଙ୍କୁ ମୋର ପ୍ରତିଦିନର ଲେଖା ଶୁଣାଉଥିଲି । କାଞ୍ଚି-କାବେରୀ ନାଟକର ତୃତୀୟ ଅଭିନୟର ପ୍ରଥମ ଦୃଶ୍ୟ ସେମାନେ ଶୁଣି ଓଡ଼ିଆରେ ନାଟକ ହୋଇପାରିବ ବୋଲି ସ୍ଥିର ମତ ଦେଲେ ।”
'କାଞ୍ଚିକାବେରୀ' ନାଟକର ପ୍ରସ୍ତାବନାରେ ଓଡ଼ିଆ ନାଟକ ସମ୍ପର୍କରେ ନାଟ୍ୟକାର ସୂତ୍ରଧର ଓ ନଟ ମୁଖରେ ନିଜର ମନ୍ତବ୍ୟ ପ୍ରକାଶ କରିଅଛନ୍ତି ।

ଏଥିରେ 'କାଞ୍ଚିକାବେରୀ'କୁ ଓଡ଼ିଆ ଭାଷାର ପ୍ରଥମ ନାଟକ ରୂପେ ଗ୍ରହଣ କରାଯାଇଥିବା ଦେଖାଯାଏ । କାଞ୍ଚିକାବେରୀ ନାମକ ନବପ୍ରଣୀତ ନାଟକ ଅଭିନୟ କରିବା ପାଇଁ ସୂତ୍ରଧର ନଟକୁ କହନ୍ତେ ନଟ କହନ୍ତି—"ବନ୍ଧୁବର ! ଆମ୍ଭେ କହୁଅଛୁଁ ସତ; ମାତ୍ର ତାହା ଓଡ଼ିଆରେ ପ୍ରଥମ ନାଟକ । ଓଡ଼ିଆ ଭାଷା ଏ ପର୍ଯ୍ୟନ୍ତ ପୂର୍ଣ୍ଣ ନାଟକୋଚିତ ରୂପେ ମାର୍ଜିତ ହୋଇଛି କି ନା ତାହା ଜଣା ନାହିଁ । କିନ୍ତୁ ଏତେ ଶୀଘ୍ର ସେ ନାଟକର ଅଭିନୟ ଦେଖାଇବାକୁ କିପରି ସାହସ କଲ ?" ନଟ ମଧ୍ୟ ପୁନର୍ବାର କହନ୍ତି—"ଆଜି ଓଡ଼ିଆ ନାଟକର ପ୍ରଥମ ଅଭିନୟ !—ତହିଁରେ ଯେ ସମସ୍ତଙ୍କର ମନ ପରିତୃପ୍ତ ହେବ, ଏହା ଆଶା କରିବା ଦୁରାଶା ମାତ୍ର ।" କାଞ୍ଚିକାବେରୀର ପ୍ରସ୍ତାବନାରୁ ସ୍ପଷ୍ଟ ଜଣାଯାଏ ଯେ ରାମଶଙ୍କର ଉକ୍ତ ନାଟକକୁ ଓଡ଼ିଆ ସାହିତ୍ୟରେ ପ୍ରଥମ ନାଟକ ରୂପେ ପ୍ରମାଣିତ କରିବାକୁ ଚେଷ୍ଟା କରିଅଛନ୍ତି । ସ୍ୱନଷ୍ଟ ପ୍ରିୟରଞ୍ଜନ ସେନ୍ ଓ ଜାନକୀବଲ୍ଲଭ ମହାନ୍ତି ମଧ୍ୟ ରାମଶଙ୍କରଙ୍କୁ ପ୍ରଥମ ନାଟ୍ୟକାର ରୂପେ ଗ୍ରହଣ କରିଅଛନ୍ତି । ଏହିସବୁ ଆଲୋଚନାରୁ ଜଣାଯାଏ ଯେ, ଉତ୍କଳଦୀପିକା ଓ ସମ୍ବାଦବାହିକା 'ବାବାଜୀ'ର ନାଟକୀୟତ୍ୱ ଉପରେ ଯେଉଁ ସନ୍ଦେହ ଆରୋପ କରିଥିଲେ, ତାହା ଫଳରେ ରାମଶଙ୍କର ନିଜକୁ ପ୍ରଥମ ନାଟ୍ୟକାର ରୂପେ ପରିଚିତ କରିବାକୁ ଉଦ୍ୟମ କରିଛନ୍ତି ମାତ୍ର, ଏବଂ ତାଙ୍କର ଏହି ଉଦ୍ୟମହିଁ ଫକୀରମୋହନ, ପ୍ରିୟରଞ୍ଜନ ସେନ୍ ଓ ଟିଗ୍ରାଜାଣଙ୍କର ରାସ୍ତ ପ୍ରଭୃତ ତାଙ୍କୁ ପ୍ରଥମ ନାଟ୍ୟକାର ରୂପେ ଗ୍ରହଣ କରିବାକୁ ପ୍ରେରଣା ଦେଇଛି । 'କାଞ୍ଚିକାବେରୀ' ଓଡ଼ିଆ ନାଟ୍ୟସାହିତ୍ୟର ପ୍ରଥମ ନାଟକ ନ ହେଲେ ମଧ୍ୟ ଏହା ଯେ ପ୍ରଥମ ଐତିହାସିକ ନାଟକ ଓ ତତ୍କାଳୀନ ସମୟର ଯଥାର୍ଥ ପ୍ରତିଫଳନ ଓ ଜାତୀୟ ଚରିତ୍ରର ଗଭୀର ଆତ୍ମପ୍ରକାଶ—ଏ କଥାକୁ ଅସ୍ୱୀକାର କରାଯାଇ ନ ପାରେ ।

## ରାମଶଙ୍କରଙ୍କ ନାଟକାବଳୀର ସ୍ୱରୂପ :

୧୮୭୮ ମସିହାରେ କଟକରେ ବଙ୍ଗଳା ନାଟକ ଅଭିନୟ ହେବା ଦେଖି ପ୍ରବକ୍ତ ରାମଶଙ୍କରଙ୍କ ମନ ମଧ୍ୟରେ ଯେଉଁ ଭାବ ପ୍ରତିକ୍ରିୟା ସୃଷ୍ଟି

ହୋଇଥିଲା, ତାର ଫଳ ସ୍ୱରୂପ ଦୀର୍ଘ ୩୭ ବର୍ଷ (୧୮୮୧—୧୯୧୭) ମଧ୍ୟରେ ସେ ଓଡ଼ିଆ ସାହିତ୍ୟକୁ ସର୍ବମୋଟ ୧୪ ଖଣ୍ଡ ନାଟକ, ଯାତ୍ରା ଓ ପ୍ରହସନ ଇତ୍ୟାଦି ପ୍ରଦାନ କରି ଯାଇଅଛନ୍ତି । ଏମାନଙ୍କ ମଧ୍ୟରୁ କ) ଐତିହାସିକ ନାଟକ ରୂପେ କାଞ୍ଚୀକାବେରୀ (୧୮୮୦), ଖ) ସାମାଜିକ ନାଟକ ରୂପେ ବିଷମେ ଦନ (୧୯୦୦), ଯୁଗଧର୍ମ (୧୯୦୬), କାଞ୍ଚନମାଳୀ (୧୯୦୪), ଲୀଳାବତୀ (୧୯୧୦) ଗ) କାଳ୍ପନିକ ନାଟକ ରୂପେ କଳିକାଳ (୧୮୮୩), ବୃନ୍ଦାବନ (୧୮୯୬), ବନବାଳା (୧୮୮୬), ବଡ଼ଲୋକ (୧୯୧୩), ବିଶୁଜଙ୍ଗ (୧୯୧୬), ଘ) ଧର୍ମମୂଳକ ନାଟକ ଭାବରେ ରାମବନବାସ (୧୮୮୧), କଂସବଧ (୧୮୯୬), ଚୈତନ୍ୟଲୀଳା (୧୯୦୬), ରାମାଭିଷେକ (୧୯୧୬) ନାଟକଗୁଡ଼ିକୁ ବିଚାର କରାଯାଇଥାଏ । ଏହି ନାଟକଗୁଡ଼ିକ ମଧ୍ୟରେ କଳିକାଳ ଓ ବୃନ୍ଦାବନ ପ୍ରହସନ ଶ୍ରେଣୀସ୍ଥ ଏବଂ ବିଶୁଜଙ୍ଗ ଓ ବଡ଼ଲୋକ ଯାତ୍ରାଧର୍ମୀ । ରାମଶଙ୍କର ବିଭିନ୍ନ ନାଟକ ରଚନା କରିଥିଲେ ହେଁ ତାଙ୍କର ନାଟ୍ୟ-ମାନସ ମୁଖ୍ୟତଃ ପୌରାଣିକ ଭାବ-ସ୍ପନ୍ଦନ ଦ୍ୱାରା ନିୟନ୍ତ୍ରିତ ହୋଇଥିବା ଲକ୍ଷ୍ୟ କରାଯାଇଥାଏ । 'କାଞ୍ଚୀକାବେରୀ' ପରି ଏକ ଐତିହାସିକ ନାଟକ ରଚନା କଲାବେଳେ ତାଙ୍କୁ ଏହି ପୌରାଣିକ ଆବେଦନ ପ୍ରଭାବିତ କରିଥିଲା ପରି ଜଣାଯାଏ ।

## 'କାଞ୍ଚୀକାବେରୀ' ରଚନାର ପ୍ରେରଣାଭୂମି :

'କାଞ୍ଚୀକାବେରୀ' ନାଟକ ରଚନା କରିବାର ପ୍ରେରଣା ନାଟ୍ୟକାର ବିଭିନ୍ନ ସୂତ୍ରକରୁ ଲାଭ କରିଥିବା ଜଣାଯାଏ । ମଧ୍ୟଯୁଗୀୟ ଓଡ଼ିଆସାହିତ୍ୟରେ ପୁରୁଷୋତ୍ତମ ଦାସଙ୍କର 'କାଞ୍ଚୀକାବେରୀ' ଏକ ଉଲ୍ଲେଖଯୋଗ୍ୟ ଭୂମିକା ଗ୍ରହଣ କରିଥିଲା । ରାମଶଙ୍କର ହୁଏତ ଏହି କାବ୍ୟ ଅଧ୍ୟୟନ କରିଥିବେ ଏବଂ ଏଥିରୁ ପ୍ରେରଣା ଲାଭ କରି 'କାଞ୍ଚୀକାବେରୀ' ନାଟକ ପରିକଳ୍ପନା କରିଥିବେ । ତାଙ୍କ ସମୟରେ ରଙ୍ଗଲାଲ ବନ୍ଦୋପାଧ୍ୟାୟଙ୍କ ରଚିତ ବଙ୍ଗଳା "କାଞ୍ଚୀକାବେରୀ" (୧୮୭୯) କାବ୍ୟ ଦ୍ୱାରା ରାମଶଙ୍କର ବିଶେଷ ଭାବରେ ପ୍ରଭାବିତ ହୋଇଥିବା ଜଣାଯାଏ । ପୁରୁଷୋତ୍ତମ ଦାସଙ୍କ କାଞ୍ଚୀକାବେରୀରେ ରାଜହୃଦୟର ଦ୍ୱନ୍ଦ୍ୱ ଓ ମାନବିକ

ସ୍ୱତ-ସଂଘର୍ଷର ପରିଚୟ ନ ଥିଲାବେଳେ ରଙ୍ଗଲାଲଙ୍କର 'କାଞ୍ଚୀକାବେରୀ'ରେ ପୁରୁଷୋତ୍ତମ ଦେବଙ୍କର ମାନବିକ ରୂପ ଓ ହୃଦୟର ଅନ୍ତର୍ଦ୍ୱନ୍ଦ୍ୱ ପ୍ରକଟିତ ହୋଇଛି ଏବଂ ନାଟ୍ୟକାର ରାମଶଙ୍କର ଏହି ଦ୍ୱନ୍ଦ୍ୱକୁ ନାଟକରେ ମୁଖ୍ୟ ଉପାଦାନ ସ୍ୱରୂପରେ ଗ୍ରହଣ କରିନେଇ 'କାଞ୍ଚୀକାବେରୀ' ନାଟକର ପରିକଳ୍ପନା କରିଅଛନ୍ତି । ଏହି ଦୁଇଟି କାବ୍ୟ ବ୍ୟତୀତ ରାମଶଙ୍କରଙ୍କ ଆଗରେ ଅନ୍ୟାନ୍ୟ କେତେକ ଐତିହାସିକ ଓ କିମ୍ବଦନ୍ତୀମୂଳକ ଉପାଦାନ ଥିଲା । 'ମାଦଳା-ପାଞ୍ଜି'ରେ ଗଜପତି ପୁରୁଷୋତ୍ତମ ଦେବଙ୍କର କାଞ୍ଚୀବିଜୟ ଓ ପଦ୍ମିନୀ କନ୍ୟାକୁ ରାଜାଙ୍କର ବିବାହ ପ୍ରସଙ୍ଗ ବର୍ଣ୍ଣିତ ହୋଇଅଛି । ପରବର୍ତ୍ତୀ କାଳରେ ଷ୍ଟର୍ଲିଂ ଏବଂ ହଣ୍ଟର ସାହେବ ଓଡ଼ିଶା ଇତିହାସ ରଚନା କରିଥିଲେ । ସେମାନଙ୍କ ଇତିହାସରେ ମଧ୍ୟ ଏହି ପ୍ରସଙ୍ଗର ବର୍ଣ୍ଣନା ରହିଛି । ପ୍ୟାରୀ-ମୋହନ ଆଚାର୍ଯ୍ୟଙ୍କର ଓଡ଼ିଶା ଇତିହାସରେ ମଧ୍ୟ କାଞ୍ଚୀବିଜୟ କଥା ବର୍ଣ୍ଣିତ । ରାମଶଙ୍କର ୧୮୮୦ ମସିହାରେ 'କାଞ୍ଚୀକାବେରୀ' ନାଟକ ରଚନା କରିବା ପୂର୍ବରୁ ଏ ସମସ୍ତ ପୁସ୍ତକ ହୁଏତ ଅଧ୍ୟୟନ କରିଥିବେ । ୧୮୭୯ ମସିହାରେ ପ୍ୟାରୀମୋହନଙ୍କ ଓଡ଼ିଶା ଇତିହାସ ହୁଏତ ତାଙ୍କୁ ସଦ୍ୟ ପ୍ରେରଣା ଦେଇଥିବ । କିମ୍ବଦନ୍ତୀ-ଇତିହାସ-କାବ୍ୟ ପ୍ରଭୃତିରୁ ସେ ପ୍ରେରଣା ଗ୍ରହଣ କରି 'କାଞ୍ଚୀକାବେରୀ' ପରି ଏକ ଐତିହାସିକ ନାଟକ ରଚନା କରିବାକୁ ଉଦ୍ୟମ କରିଥିବେ ।

'କାଞ୍ଚୀକାବେରୀ' ଘଟଣା କିମ୍ବଦନ୍ତୀମୂଳକ ନୁହେଁ; ମାତ୍ର ଐତିହାସିକ । ଏଥିରେ କିମ୍ବଦନ୍ତୀର ଛାୟା ଅଛି—କଳ୍ପନାବିଳାସର ପ୍ରଲେପ ଅଛି; ତଥାପି ଏହା ଇତିହାସର ବୃତ୍ତରୁ ସ୍ୱତନ୍ତ୍ର ନୁହେଁ । ଡକ୍ଟର ନଟବର ସାମନ୍ତରାୟ କହନ୍ତି "କାଞ୍ଚୀକାବେରୀର ବିଷୟବସ୍ତୁ ଐତିହାସିକ ନୁହେଁ; ଏହା ପୂର୍ଣ୍ଣତଃ କିମ୍ବଦନ୍ତୀମୂଳକ ।" ମାତ୍ର 'ମାଦଳାପାଞ୍ଜି'ଠାରୁ ଆରମ୍ଭ କରି ଷ୍ଟର୍ଲିଂ, ହଣ୍ଟର, ପ୍ୟାରୀମୋହନ ଆଚାର୍ଯ୍ୟଙ୍କର ଓଡ଼ିଶା ଇତିହାସ, ଜଗବନ୍ଧୁ ସିଂହଙ୍କର 'ପ୍ରାଚୀନ ଉତ୍କଳ', ପ୍ରଭାତ ମୁଖାର୍ଜିଙ୍କର "The Gajapati Kings of Orissa", ଡକ୍ଟର ହରେକୃଷ୍ଣ ମହତାବଙ୍କର 'ଓଡ଼ିଶା ଇତିହାସ' ପର୍ଯ୍ୟନ୍ତ ବିଭିନ୍ନ ଗ୍ରନ୍ଥକୁ ମିଳାଇ ଦେଖିଲେ ଏହି ଘଟଣାକୁ କିମ୍ବଦନ୍ତୀ କହି-

ହେବ ନାହିଁ । ଏଥିରେ ଐତିହାସିକ ସତ୍ୟତା ଅଛି । କାଞ୍ଚିର ରାଜା ଶାଳ୍ୱ ନରସିଂହଦେବଙ୍କ ସହିତ ଓଡ଼ିଶାର ଗଜପତି ପୁରୁଷୋତ୍ତମ ଦେବଙ୍କର ଯୁଦ୍ଧ ଓ ପୁରୁଷୋତ୍ତମ ଦେବଙ୍କର ବିଜୟ ଇତିହାସ ସମର୍ଥିତ । ଏହି ଐତିହାସିକ କଥାବସ୍ତୁ ମଧ୍ୟରେ ଗଜପତି ପୁରୁଷୋତ୍ତମ ଦେବ ଓ କାଞ୍ଚି ରାଜକନ୍ୟା ପଦ୍ମାବତୀଙ୍କର (ଇତିହାସରେ ଯାହା ରୂପାମ୍ବିକା ଭାବରେ ପ୍ରଖ୍ୟାତ) ପ୍ରେମ-କାହାଣୀ ବର୍ଣ୍ଣିତ ହୋଇଅଛି । ଏ ଘଟଣା ଇତିହାସ ସମର୍ଥିତ ନୁହେଁ; ମାତ୍ର କିମ୍ବଦନ୍ତୀପ୍ରସୂତ ଏବଂ ଏହାର ମାଧ୍ୟମରେ ହିଁ ଐତିହାସିକ ଚରିତ୍ର ପୁରୁଷୋତ୍ତମ ଦେବଙ୍କର ମାନବିକ ଚରିତ୍ରଧର୍ମ ଓ ଅନ୍ତର୍ଦ୍ୱନ୍ଦ୍ୱକୁ ଦେଖାଇବା ପାଇଁ ଉଦ୍ୟମ କରାଯାଇଅଛି । ଅତଏବ 'କାଞ୍ଚିକାବେରୀ' କିମ୍ବଦନ୍ତୀ-ଆଶ୍ରିତ ଏକ ଐତିହାସିକ ନାଟକ ଏବଂ ଏଥିରେ ଇତିହାସରେ ଅନୁଦ୍‌ଘାଟିତ ଓ ଓ ଅନାବିଷ୍କୃତ ମାନବିକ ସତ୍ତାକୁ ନାଟ୍ୟକାର ଉଦ୍‌ଘାଟନ କରିଅଛନ୍ତି ଓ ଇତିହାସର ଜୀର୍ଣ୍ଣ କଥାବସ୍ତୁରେ ନୂତନ ପ୍ରାଣବିନ୍ୟାସ କରି ନାଟ୍ୟରୂପ ଦେଇଅଛନ୍ତି ।

## 'କାଞ୍ଚି କାବେରୀ' ଜାତୀୟଚେତନାର ଆଦ୍ୟ ସଂକେତ :

ନ'ଅଙ୍କ ଦୁର୍ଭିକ୍ଷ (୧୮୬୬) ଓ ଭାଷାବିଲୋପ ଆନ୍ଦୋଳନ (୧୮୭୯) ଫଳରେ ଓଡ଼ିଶାରେ ଏକ ନୂତନ ଜାତୀୟ ଚେତନାର ସୂତ୍ରପାତ ହୋଇଥିଲା । ୧୫୬୮ ସାଲରେ ସ୍ୱାଧୀନ ଗଜପତି ମୁକୁନ୍ଦଦେବଙ୍କ ମୃତ୍ୟୁ ପରେ ଓଡ଼ିଶା କ୍ରମେ ବିଭିନ୍ନ ବିଦେଶୀ ଶାସକମାନଙ୍କ ଦ୍ୱାରା ଶାସିତ ହେଲା ଏବଂ କ୍ରମେ ଓଡ଼ିଶାର ସ୍ୱାତନ୍ତ୍ର୍ୟ, ଐଶ୍ୱର୍ଯ୍ୟ ଓ ଗୌରବ ନଷ୍ଟ ହେବାକୁ ଲାଗିଲା । ୧୮୦୩ ସାଲରେ ଇଂରେଜମାନେ ଓଡ଼ିଶାକୁ ଅଧିକାର କଲେ । ୧୮୧୭ ସାଲରେ ପାଇକ ବିଦ୍ରୋହ ଫଳରେ ଜାତୀୟତାର ଆଦ୍ୟ ଓଁକାର ସୃଷ୍ଟି ହେଲା ଏବଂ ଏହି ଓଁକାର ସୁରେନ୍ଦ୍ରସାଏଙ୍କର ବିଦ୍ରୋହ ଭିତରେ ପ୍ରତିଧ୍ୱନିତ ହେଲା; ମାତ୍ର ବିପୁଳ ଇଂରେଜ ସରକାର ନିକଟରେ ଏହି ଆନ୍ଦୋଳନ ବ୍ୟର୍ଥ ହୋଇଗଲା । ତଥାପି ଊନବିଂଶ ଶତାବ୍ଦୀର ପ୍ରଥମାର୍ଦ୍ଧରେ ଦେଖାଦେଇଥିବା ଜାତୀୟ ଚେତନା ଦ୍ୱିତୀୟାର୍ଦ୍ଧରେ ବିଶେଷତଃ ଏହି

ଶତାବ୍ଦୀର ଶେଷ ଦଶକରେ ନୂତନ ରୂପରେଖ ଗ୍ରହଣ କଲା । 'ଉଡ଼ିଆ ସ୍ୱତନ୍ତ୍ର ଭାଷା ନୁହେଁ' ପରି ଏକ ହୀନ ମନ୍ତବ୍ୟ ତତ୍କାଳୀନ ଶିକ୍ଷିତ ସମ୍ପ୍ରଦାୟ ମନ ଭିତରେ ଗଭୀର ପ୍ରତିକ୍ରିୟା ସୃଷ୍ଟି କରିବା ସଙ୍ଗେ ସଙ୍ଗେ ଏକ ନୂତନ ଜାତୀୟ ଆତ୍ମପ୍ରତ୍ୟୟ ସୃଷ୍ଟି କରିବାରେ ସାହାଯ୍ୟ କଲା । ଏହି ଜାତୀୟ ଚେତନା ମୁଖ୍ୟତଃ ଭାଷାକୁ କେନ୍ଦ୍ର କରି ସୃଷ୍ଟି ହୋଇଛି । ଯେତେବେଳେ ଓଡ଼ିଆ ଭାଷାରେ ନାଟକ ରଚନା କରିବା ଅସମ୍ଭବ ବୋଲି କେତେକ ଲୋକ ମନ୍ତବ୍ୟ ପ୍ରଦାନ କରୁଥିଲେ, ସେତେବେଳେ ନାଟ୍ୟକାର ରାମଶଙ୍କର ପ୍ରସ୍ତାବନାରେ କହିଛନ୍ତି—"ଘଷା ଖାଇଲେ ସବୁ ସଜାଡ଼ି ହୋଇଯାଏ, ଲୁହାର ତାରରୁ ମଧ୍ୟ ସୁସ୍ୱର ବାହାରେ । ନାଟକ ସଙ୍ଗରେ ଭାବର ସମ୍ପର୍କ ଅଛି, ଭାବହିଁ ତହିଁର ସାର, ଯେବେ ଓଡ଼ିଆମାନଙ୍କର ଭାବନା ଶକ୍ତି ଅଛି, ତେବେ ଭାଷା ନ ମିଳିବ କାହିଁକି ?" ଏଥିରୁ ରାମଶଙ୍କରଙ୍କର ଓଡ଼ିଆ ଭାଷାପ୍ରୀତି ସହଜରେ ଅନୁମେୟ ।

ଏହାବ୍ୟତୀତ ସେତେବେଳେ ପୁରୀର ଗଜପତି ଦିବ୍ୟସିଂହ ଦେବଙ୍କୁ ଯେପରି ଭାବରେ ଇଂରେଜ ସରକାର ଦ୍ୱିପାନ୍ତର ଦଣ୍ଡ ଦେଇଥିଲେ, ତାହା ଫଳରେ ଓଡ଼ିଶାର ଜନସାଧାରଣଙ୍କ ମଧ୍ୟରେ ଯେଉଁ ପ୍ରତିକ୍ରିୟା ଦେଖା-ଦେଇଥିଲା, ସେ କଥାକୁ ରାମଶଙ୍କର ଉପଲବ୍ଧି କରିଥିବେ । ରାଜକ୍ଷମତା ଉପରେ ଇଂରେଜ ସରକାରଙ୍କର ଏହି ହସ୍ତକ୍ଷେପକୁ ଜନସାଧାରଣ ଅନୁମୋଦନ କରିପାରି ନ ଥିଲେ । 'ଉତ୍କଳଦୀପିକା'ରେ ଗୌରୀଶଙ୍କର ରାଜାଙ୍କର ନିର୍ବାସନ ଦଣ୍ଡ ପ୍ରସଙ୍ଗକୁ ପ୍ରକାଶ କରି ଉତ୍କଳର ଜନସାଧାରଣଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ଓଡ଼ିଶାରେ ପୁରୀର ରାଜାଙ୍କୁ ଠାକୁରରାଜା ଓ ଚଳନ୍ତି ବିଷ୍ଣୁ ବୋଲି ମନେକରିଆନ୍ତି । ତାଙ୍କ ପ୍ରତି ଇଂରେଜ ସରକାରଙ୍କର ଏହି ବ୍ୟବହାର ନିଶ୍ଚୟ ସେତେବେଳେ ପ୍ରତିକ୍ରିୟା ସୃଷ୍ଟି କରିଥିବ ଏବଂ ଯୁବକ ନାଟ୍ୟକାର ରାମଶଙ୍କର ଏହି ଜାତୀୟ ପ୍ରତିକ୍ରିୟାକୁ ନିଶ୍ଚୟ ଲକ୍ଷ୍ୟ କରିଥିବେ । ଡକ୍‌ଟର ନଟବର ସାମନ୍ତରାୟ ତାଙ୍କ ଓଡ଼ିଆ ସାହିତ୍ୟର ଇତିହାସ ଗ୍ରନ୍ଥରେ ଏ ପ୍ରସଙ୍ଗରେ ଲେଖିଛନ୍ତି, "ନେଭଟଭରେ ଯେତେବେଳେ ଏକ ଜାତୀୟ ଭାବ ଖେଳିଯାଉଥିଲା, ସେତେବେଳେ ଅଧଃପତିତ ଓଡ଼ିଆ-

ଜାତିକୁ ନୂତନ ମନ୍ତ୍ରରେ ଉଦ୍‌ଜୀବିତ କରିବା ପାଇଁ ଜାତିର ଗୌରବୋଜ୍ଜ୍ୱଳ ଅତୀତ ଇତିହାସକୁ ନାଟକ ମାଧ୍ୟମରେ ପରିବେଷଣ କରିବାର ବଳବତୀ କାମନା ରାମଶଙ୍କରଙ୍କ ମନରେ ଉଦିତ ହୋଇଥିବ, ଏହା ନିଃସନ୍ଦେହରେ କୁହାଯାଇପାରେ । ଜନସାଧାରଣ ନିଜର ଗୌରବାବହ ଅତୀତ ଐତିହ୍ୟ ସନ୍ଦର୍ଶନ କରି ନାଟକ ପ୍ରତି ଆକୃଷ୍ଟ ହେବେ, ଏ ଭାବନା ମଧ୍ୟ ତାଙ୍କ ମନରେ ଜାତ ହୋଇଥିବ । ସମର ବିଜୟୀ ଓଡ଼ିଆ ଜାତି ସହିତ ନାଟ୍ୟକାରଙ୍କ ସମସ୍ତର ଓଡ଼ିଆ ଜାତି ଓ ଆଦର୍ଶ ନରପତି ପୁରୁଷୋତ୍ତମ ଦେବଙ୍କ ସହିତ ଦିବ୍ୟସିଂହ ଦେବ—ଏଇମାନଙ୍କ ତୁଳନା ଲେଖକଙ୍କ ପକ୍ଷରେ ଅତି ସହଜ ଓ ପ୍ରତ୍ୟକ୍ଷ ହୋଇପାରିବ; ସେଥିପାଇଁ ରାମଶଙ୍କର ଅତି ଚତୁରତା ସହ ଏ ବିଷୟବସ୍ତୁ ନିର୍ବାଚନ କରିଛନ୍ତି ।" ଓଡ଼ିଶାର ଗଜପତି ଜାତୀୟ ଐତିହ୍ୟର ପ୍ରମୂର୍ତ୍ତି ପ୍ରତୀକ । ତାଙ୍କ ପ୍ରତି କୌଣସି ବିପଦ ବା ବିପର୍ଯ୍ୟୟ ଆସିବା ଅର୍ଥ ଓଡ଼ିଆ ଜାତି ପ୍ରତି ସେହି ବିପଦ ବା ବିପର୍ଯ୍ୟୟ ଆସିବା ସହ ସମାନ । ଦିବ୍ୟସିଂହ ଦେବଙ୍କ ପ୍ରତି ଏହି ବିପର୍ଯ୍ୟୟ ଆସିଥିବା-ବେଳେ ନାଟ୍ୟକାର ସୁଦୂର ଇତିହାସରୁ କିମ୍ବଦନ୍ତୀ ଘଟଣାକୁ ଗ୍ରହଣ କରି ନାଟ୍ୟରୂପ ଦେଇ ଗଜପତି ପୁରୁଷୋତ୍ତମ ଦେବଙ୍କର ଜାତୀୟତାବୋଧ ଓ ତାଙ୍କ ପ୍ରତି ଓଡ଼ିଆ ଜାତିର ବିଶ୍ୱାସ ଓ ମମତାକୁ ରୂପ ଦେଇଅଛନ୍ତି । ଓଡ଼ିଶାର ଗଜପତି ଜଗନ୍ନାଥଙ୍କର ସେବା କରନ୍ତି ଏବଂ ସେଇଥିରେ ସେ ଗଭୀର ଆନନ୍ଦ ପାଆନ୍ତି । ଏଥିପାଇଁ ତାଙ୍କୁ କେହି ଅପମାନ ଦେଲେ ସେ ତାର ପ୍ରତିଶୋଧ ନିଅନ୍ତି । ଯେତେବେଳେ କାଞ୍ଚିରାଜା କହୁଛନ୍ତି— "ଓଡ଼ିଶା ରାଜା ସଙ୍ଗେ କାଞ୍ଚିକାବେରୀ ରାଜାଙ୍କର କୌଣସି ସମ୍ପର୍କ ନାହିଁ । ପୁରୁଷୋତ୍ତମ ଦେବ ରାଜଗୃହରେ ଗୋପାଙ୍ଗନୀ-ଗର୍ଭ-ସମ୍ଭୂତ । ତହିଁରେ ଆପଣାର ପଦ ଗୌରବ ବୁଝି ନ ପାରି ଅନ୍ତ୍ୟଜଙ୍କ ପରି ଚଣ୍ଡାଳର ଆଚରଣ କରେ—ଆଜି ସିଂହାସନରେ ବସିଛି ବୋଲି ତାହା ସହିତ କାଞ୍ଚିରାଜା ସଖ୍ୟଭାବ ରଖିବା ନିମନ୍ତେ ପ୍ରସ୍ତୁତ ନାହାନ୍ତି ।"—ସେତେବେଳେ ଉତ୍କଳ ଦୂତ ଓଡ଼ିଶାର ଗଜପତି ପୁରୁଷୋତ୍ତମ ଦେବଙ୍କର ବୀରତ୍ୱ ଓ ଐଶ୍ୱର୍ଯ୍ୟ ସମ୍ବନ୍ଧରେ କହୁଛନ୍ତି—

"× × × ବଡ଼ ଓଡ଼ିଶା ରାଜନ
ଭାଗ୍ୟବଳେ ପାଇଛନ୍ତି ବଡ଼ ଅଧିକାର,—
ଅଧିକାର ତାହା, ନୁହେ ସାମାନ୍ୟ ବିଷୟ ।

× × ×

କରନ୍ତୁ କରିବେ ଯେତେ ପ୍ରାୟଶ୍ଚିତ୍ତ ତାର
ଝଟରେ ଉଚିତ ସତ୍ୟ; ପଡ଼ନ୍ତୁ ହୋ ଯାଇ
ଜଗନ୍ନାଥ ପାଦପଦ୍ମେ ଦୃଢ଼ କରି ମନ,
ମାଗନ୍ତୁ ସହସ୍ର କୋଟି କ୍ଷମା ସେହି ପଦେ
ତେବେ ସେ ସକଳ ଦୋଷ ହୋଇବ କ୍ଷାଳିତ ।
ନୋହିଲେ ଅଛୁ ଯେ ବାଞ୍ଛା ଦୁରମୁଖେ, ତାହା
ଫଳିବ ଅବଶ୍ୟ,—ଯେଉଁ ପ୍ରତିଜ୍ଞା ହୋଇଛୁ
ପର୍ବତରୁଁ ଅଟଳ,—ପ୍ରଭୁ ଅଗଣ୍ୟ ସେନାର
ଆସୁଛନ୍ତି ସଙ୍ଗେ; କନ୍ୟା ନ ଦେଇ ଆପଣା
ବୋଇଲେ ଚଣ୍ଡାଳ,—ସେହି ଘୋର ଅପମାନ
ପ୍ରତିଶୋଧ ଦାନେ; ଜୟ କରି କାଞ୍ଚିଦେଶ
କରିବେ ଚଣ୍ଡାଳକୁ ସ୍ୱୀନ ଜାମୁଁକ୍ର ମୋ ପ୍ରଭୁ—
ଚଣ୍ଡାଳ ହସ୍ତରେ ନିକ୍ଷେପିବେ ପଦ୍ମାବତୀ ।"

ଏହି ସଂଲାପ ମଧ୍ୟରେ ତତ୍କାଳୀନ ଜାତୀୟ ସ୍ପନ୍ଦନହିଁ ପ୍ରକଟିତ । ନାଟ୍ୟକାର ରାମଶଙ୍କର ଏ ସମ୍ପର୍କରେ ସଚେତନ ହୋଇ ଏହି ଐତିହାସିକ ନାଟକଟିହିଁ ପରିକଳ୍ପନା କରିଅଛନ୍ତି । ଏହାଦ୍ୱାରା ସେ ଓଡ଼ିଆ ଜାତିର ସୁପ୍ତ ଜାତୀୟ ଚେତନାକୁ ଜାଗ୍ରତ କରିବାକୁ ଉଦ୍ୟମ କରିଛନ୍ତି ମାତ୍ର ।

## 'କାଞ୍ଚି କାବେରୀ' ଜଗନ୍ନାଥ-ଭକ୍ତିର ଏକ ଅମ୍ଳାନ ସଂକେତ :

ଓଡ଼ିଆ ଜାତି ଯୁଗେ ଯୁଗେ ଶ୍ରୀ ଜଗନ୍ନାଥଙ୍କୁ ଗଭୀର ଭାବରେ ଭକ୍ତି କରି ଆସିଛି । ଶ୍ରୀ ଜଗନ୍ନାଥହିଁ ତାର ସମ୍ପଦ ଓ ବିପଦର ବନ୍ଧୁ । ସେହି

ପରମ କାରୁଣିକ ଜଗନ୍ନାଥଙ୍କଠାରେ ନିଜକୁ ସମର୍ପଣ କରିଦେଇ ଏ ଜାତି ଗଭୀର ଆତ୍ମତୃପ୍ତି ଲାଭ କରେ । ସେହି ଜଗନ୍ନାଥଙ୍କ ଆଶ୍ରୟ ନେଇ ସେ ଯୁଦ୍ଧକ୍ଷେତ୍ରରେ ଅବତୀର୍ଣ୍ଣ ହୁଏ—ଶତ୍ରୁ ବିଦୀର୍ଣ୍ଣ କରି ଶ୍ରୀ ଜଗନ୍ନାଥଙ୍କର ମହିମା କୀର୍ତ୍ତନ କରେ । ଶ୍ରୀ ଜଗନ୍ନାଥହିଁ ସତେ ଯେପରି ଏ ଜାତିର ଜାତୀୟ ଠାକୁର । ତାଙ୍କର ନିର୍ଦ୍ଦେଶରେ ଏ ଜାତି ଶାସନ କରେ—ରାଜ୍ୟଜୟ କରେ । କେବଳ ଓଡ଼ିଆ ଜାତି ନୁହେଁ, ସମଗ୍ର ଭାରତୀୟ ଜନତା ଶ୍ରୀ ଜଗନ୍ନାଥଙ୍କ ଦର୍ଶନ କରିବା ପାଇଁ ଶ୍ରୀକ୍ଷେତ୍ରକୁ ଆସନ୍ତି । ଓଡ଼ିଶାର ଗଜପତି ଶ୍ରୀ ଜଗନ୍ନାଥଙ୍କ ରଥ ନିକଟରେ ଛେରାପହଁରା କରନ୍ତି । ସାଧାରଣ ଲୋକଙ୍କ ସହିତ ମିଶନ୍ତି । ଏଥିରେ ସେ ଗଭୀର ଆତ୍ମତୃପ୍ତି ଲାଭ କରନ୍ତି । ଅନ୍ୟ ଦୃଷ୍ଟିରେ ଏହି କାର୍ଯ୍ୟ ଘୃଣ୍ୟ ହେଲେହେଁ ଓଡ଼ିଆ ଜାତି ନିକଟରେ ଶ୍ଳାଘ୍ୟ । ନାଟ୍ୟକାର ରାମଶଙ୍କର ଓଡ଼ିଆ ଜାତିର ଜଗନ୍ନାଥୈକପ୍ରାଣତାକୁ ଗଭୀର ଭାବରେ ଉପଲବ୍ଧି କରିଥିଲେ । ଓଡ଼ିଆର ଜାତୀୟ ଜୀବନ ସେହି ଜଗନ୍ନାଥଙ୍କୁ କେନ୍ଦ୍ର କରି ନିୟନ୍ତ୍ରିତ । ତେଣୁ ନାଟ୍ୟକାର ଆଲୋଚ୍ୟ କାଞ୍ଚିକାବେରୀ ନାଟକରେ ଜଗନ୍ନାଥ ଚେତନାର ପୁନର୍ଜାଗରଣ କରିବା ନିମିତ୍ତ ସତେ ଯେପରି ପ୍ରେରଣା ଦେଇଛନ୍ତି । ପ୍ରସ୍ତାବନାରେ ସୂତ୍ରଧର ମୁଖରେ ସେ କହିଛନ୍ତି—"ପୁଣି ଏ ଦେଶପ୍ରତିଷ୍ଠିତ ଯେଉଁ ଜଗନ୍ନାଥ ଦେବଙ୍କର ଦର୍ଶନେ ନିମନ୍ତେ ଭାରତବର୍ଷର ତାବତ୍ ଲୋକେ ପିପାସୁ ହୋଇ ଦୌଡ଼ିଛନ୍ତି ଆଜ ତାଙ୍କର ବିଷୟ ଯେନ ଏଠାରେ ପ୍ରଥମ ଅଭିନୟ କରିବା ସୁନ୍ଦର ସୁରୁଚିର କାର୍ଯ୍ୟ ।" ନାଟ୍ୟକାର ଦର୍ଶକମାନଙ୍କୁ "ନିର୍ଦ୍ଦୋଷ ଆମୋଦ" ଦେବା ଲାଗି ଏହି 'ସୁନ୍ଦର ସୁରୁଚିର କାର୍ଯ୍ୟ'କୁ ଉକ୍ତ ନାଟକରେ ନାଟ୍ୟରୂପ ଦେଇଅଛନ୍ତି ।

'କାଞ୍ଚିକାବେରୀ' ନାଟକରେ ଶ୍ରୀ ଜଗନ୍ନାଥହିଁ ଯଥାର୍ଥରେ ପ୍ରାଣକେନ୍ଦ୍ର । ତାଙ୍କର ସେବା କରିଥିବାରୁ ପୁରୁଷୋତ୍ତମ ଦେବଙ୍କୁ କାଞ୍ଚିରାଜା ନିନ୍ଦା କରିଅଛନ୍ତି ଏବଂ ସେହି ଅପମାନର ପ୍ରତିଶୋଧ ନେବାକୁ ପୁରୁଷୋତ୍ତମ ଦେବ କାଞ୍ଚି ଅଭିଯାନ କରିଛନ୍ତି । ଏହି ଅଭିଯାନରେ ଶ୍ରୀ ଜଗନ୍ନାଥ ଓ ବଳଭଦ୍ର ସୈନିକ ବେଶରେ ଅବତୀର୍ଣ୍ଣ ହୋଇଛନ୍ତି । ପୁରୁଷୋତ୍ତମ ଦେବ ଶ୍ରୀ ଜଗନ୍ନାଥଙ୍କର ମହିମା ବର୍ଣ୍ଣନା କରି କହିଛନ୍ତି—"କାଞ୍ଚିର ରାଜା କି ଜାଣେନା

ଆମ୍ଭେ ଯାହାର ସେବା କରୁଁ ସେ ସମସ୍ତ ଜଗତର କର୍ତ୍ତା, ସମସ୍ତ ଲୋକଙ୍କର ପିତା—ସେ ମନେକଲେ କ୍ଷଣକ ମଧ୍ୟରେ କାମ୍ବୋଜଦେଶକୁ କାହିଁ ଉଡ଼ାଇ ଦେଇପାରେ । ତାହାର କି ଏତକ ଜ୍ଞାନ ନୋହିଲା ଯେ ଯେଉଁ ଦେବତାର ଦର୍ଶନ ନିମନ୍ତେ ସମସ୍ତ ଭାରତବର୍ଷର ଯାବନ୍ତ ଲୋକେ ଅହରହ ଏ ସ୍ଥାନକୁ ଆସି ଏହି ନୀଳଚକ୍ରକୁ ସ୍ୱର୍ଗ ପରି କରି ରଖିଛନ୍ତି, ଏଠାକୁ ଆସି ଦେବ-ଦର୍ଶନ ନିମନ୍ତେ ଏତେ ମହାକୋଳାହଳ ଲଗାଇଛନ୍ତି, ସେ ମନେକଲେ ଏହିକ୍ଷଣି ତାକୁ ଜଳାଇ ଦେଇପାରେ, ତାକୁ ଅଧଃପାତରେ ବିନଷ୍ଟ କରିପାରେ ? ଯାହାର ଅସୀମ ମାୟାବଳରେ ସିଂହଦ୍ୱାରକୁ ସମୁଦ୍ର ନିକଟ ହେଲେ ମଧ୍ୟ ତାହାର ବଜ୍ରନାଦ ଶୁଭଇ ନାହିଁ, ଆମ୍ଭେ ସେହି ପ୍ରଭୁଙ୍କ ସେବା କରିବା କାଳରେ ଆମ୍ଭଙ୍କୁ ଚଣ୍ଡାଳ ବୋଲି କହିବ ?" ପୁରୁଷୋତ୍ତମ-ଦେବଙ୍କର ଶ୍ରୀ ଜଗନ୍ନାଥଙ୍କ ପ୍ରତି ଗଭୀର ଭକ୍ତି । ଜଗନ୍ନାଥଙ୍କ ନିର୍ଦ୍ଦେଶରେ ସେ କାଞ୍ଚି ଅଭିଯାନ କରିଛନ୍ତି । ମାଣିକାଠାରୁ ଶ୍ରୀ ଜଗନ୍ନାଥ ଓ ବଳଭଦ୍ରଙ୍କର ସୈନିକ ବେଶରେ ଯାତ୍ରା କରିଥିବା ସମ୍ବାଦ ପାଇ ପୁରୁଷୋତ୍ତମ ଦେବ କହିଛନ୍ତି—

"ଦେବ ଜଗନ୍ନାଥ ସହ ବଳଭଦ୍ର ଭ୍ରାତା
ଅମ୍ଭର ନିମନ୍ତେ ଏତେ କ୍ଲେଶ ସହ୍ୟ କରି
ଆମ୍ଭର ପ୍ରତିଜ୍ଞା ଏବା ପୂରାଇବା ଆଶେ,
ନିଜେ ଯାଉଛନ୍ତି କାଞ୍ଚି ଯୁଦ୍ଧରେ ପ୍ରବର୍ତ୍ତିବେ ?
ପାଇଲି ମୁଁ ଏତେଦିନେ ଚିହ୍ନି ଆପଣାକୁ
ଭଲ କରି ଭବେ, କେହୁ ଏହୁ ଧରାଧାମେ
ମୋଠାରୁ ଭକତ-ପ୍ରୀତ ଭକ୍ତିରସେ ମଗ୍ନ ?"

ଯୁଦ୍ଧରେ ପରାଜୟ ହେଉ ପୁରୁଷୋତ୍ତମ ଦେବ ଶ୍ରୀ ଜଗନ୍ନାଥଙ୍କୁ ଗଭୀର ଭାବରେ ପ୍ରାର୍ଥନା କରିଅଛନ୍ତି । ତାଙ୍କର ଗଭୀର ଅନ୍ତର୍ଦହନ ଦୃଷ୍ଟି ହୋଇଛି । ନିଜର ସକଳ ଅହଂକାର ଓ ଅଭିମାନ ଅଶ୍ରୁଜଳରେ ବିଧୌତ ହୋଇ-ଯାଇଛି । ସେ ନିମିତ୍ତ ମାତ୍ର । ଶ୍ରୀ ଜଗନ୍ନାଥହିଁ ସବୁ କିଛି କରୁଛନ୍ତି । ତାଙ୍କରି ନିର୍ଦ୍ଦେଶରେ ପୁରୁଷୋତ୍ତମ ଦେବ ପୁନର୍ବାର ଯୁଦ୍ଧଯାତ୍ରା କରିଛନ୍ତି ଏବଂ

ବଳବତ୍ତୀ ହୋଇଛନ୍ତି । ଅତଏବ 'କାଞ୍ଚିକାବେରୀ' ନାଟକରେ ଜାତୀୟତାର ସ୍ପନ୍ଦନ ଥିଲେହେଁ, ବୀରତ୍ୱର ସଙ୍କେତ ଥିଲେହେଁ ଭକ୍ତି ଯେପରି ପ୍ରାଧାନ୍ୟ ବିସ୍ତାର କରିଛି । ଏହି ଭକ୍ତି ଶ୍ରୀ ଜଗନ୍ନାଥଙ୍କୁ କେନ୍ଦ୍ର କରି ଗଢ଼ିଉଠିଛି । ଯେଉଁ ସମୟରେ କେବଳ ଓଡ଼ିଶାରେ ନୁହେଁ, ସାରା ଭାରତବର୍ଷରେ ଖ୍ରୀଷ୍ଟଧର୍ମର ପ୍ରସାର ହେଉଥିଲା, ବ୍ରାହ୍ମଧର୍ମର ବିକାଶ ହେଉଥିଲା ଏବଂ ମୂର୍ତ୍ତିପୂଜା ବିରୁଦ୍ଧରେ ଆନ୍ଦୋଳନ ହେଉଥିଲା, ସେତେବେଳେ ରାମଶଙ୍କର ବୋଧହୁଏ ସେହି ପ୍ରତିକ୍ରିୟାରୁ ଶ୍ରୀ ଜଗନ୍ନାଥଙ୍କର ମହତ୍ତ୍ୱକୁ ଆଲୋଚ୍ୟ ନାଟକରେ ବର୍ଣ୍ଣନା କରିଅଛନ୍ତି । ଏଥିରେ ପୁରୁଷୋତ୍ତମ ଦେବଙ୍କୁ ଜଣେ ବୀର ଅପେକ୍ଷା ଜଣେ ଭକ୍ତ ଭାବରେ ବିଶେଷ ରୂପେ ବର୍ଣ୍ଣନା କରାଯାଇଛି । ଏହି କାରଣରୁ 'କାଞ୍ଚିକାବେରୀ' ନାଟକରେ ବୀରରସ ଗୌଣ ହୋଇଯାଇ ଭକ୍ତିରସ ପ୍ରାଧାନ୍ୟଲାଭ କରିଛି ଏବଂ ଅଲୌକିକ ଶକ୍ତି ପ୍ରତିଷ୍ଠା ଲାଭ କରି ଲୌକିକ ଶକ୍ତି ମ୍ଳାନପ୍ରାୟ ହୋଇଯାଇଛି । ଏହାଦ୍ୱାରା ନାଟକର କଳା ସୃଷ୍ଟିରେ ବାଧା ସୃଷ୍ଟି ହୋଇଅଛି । ଯାତ୍ରା ଓ ଲୀଳାରେ ପରଂପରା କ୍ରମେ ପ୍ରଚଳିତ ହୋଇ ଆସୁଥିବା ଦୈବୀଶକ୍ତିର ପ୍ରଭାବହିଁ ରାମଶଙ୍କରଙ୍କୁ ଏହିପରି ଅତିଭୌତିକ ଶକ୍ତି ଉପରେ ଗୁରୁତ୍ୱ ଦେବାକୁ ବାଧ୍ୟ କରିଥିଲା । ଅତଏବ କମ୍ବଦନ୍ତୀ-ଇତିହାସ ନିର୍ଭରଶୀଳ କାଞ୍ଚିକାବେରୀ ନାଟକରେ ଜାତୀୟତାର ସ୍ପନ୍ଦନ ଥିଲେହେଁ ଦୈବୀଶକ୍ତିହିଁ ପ୍ରାଧାନ୍ୟ ଲାଭ କରିଛି;— ସନ୍ଦେହ ନାହିଁ ।

## 'ସୁନ୍ଦର-ରୁଚିର କାର୍ଯ୍ୟ'—କାଞ୍ଚି କାବେରୀ :

ଭାରତବର୍ଷରେ ତଥା ଓଡ଼ିଶାରେ ପାଶ୍ଚାତ୍ୟ ଶିକ୍ଷା ଓ ସଭ୍ୟତାର ବିକାଶ ଏବଂ ପ୍ରସାର ଫଳରେ ଏକ ନୂତନ ସାମାଜିକ ଚେତନା ଊନବିଂଶ ଶତାବ୍ଦୀର ଦ୍ୱିତୀୟାର୍ଦ୍ଧ ବେଳକୁ ସୃଷ୍ଟି ହୋଇଥାଏ । ଓଡ଼ିଶାରେ ବିଶେଷତଃ ଏହି ଶତାବ୍ଦୀର ଶେଷ ଦଶକରେ ଏହି ନୂତନ ସାମାଜିକ ଭାବଧାରା ଦେଖିବାକୁ ମିଳୁଥାଏ । ବିଭିନ୍ନ ସାମାଜିକ ତଥା ଧାର୍ମିକ ଅନୁଷ୍ଠାନ ଓ ଉତ୍ସବମାନଙ୍କରେ ସୁରାପାନ ଏକ ମର୍ଯ୍ୟାଦାରେ ପରିଣତ ହୋଇଥିଲା । ବେଶ୍ୟା ନୃତ୍ୟ ମଧ୍ୟ ସେତେବେଳେ ସମାଜରେ ପ୍ରଭାବ ବିସ୍ତାର କରିଥିଲା । ଯାତ୍ରା, ପାଲା, ସୁଆଙ୍ଗ ଆଦିରେ ସେ ସମୟରେ ଅଶ୍ଳୀଳ ଭାବ ପ୍ରକଟିତ

ହୋଇଥିଲା । ଓଡ଼ିଶାରେ ବ୍ରାହ୍ମଧର୍ମର ପ୍ରଭାବ ଫଳରେ ଏକ ନୂତନ ରୁଚିବୋଧ
କ୍ରମେ ପ୍ରତିଷ୍ଠିତ ହେବାକୁ ଲାଗିଲା । ପ୍ୟାରୀମୋହନ ଆଚାର୍ଯ୍ୟ 'ଉତ୍କଳପୁତ୍ର'ରେ
ଅଶ୍ଳୀଳତାବିରୋଧି ଲେଖାମାନ ପ୍ରକାଶ କଲେ ଏବଂ ସାମାଜିକ ଉତ୍ସବ-
ମାନଙ୍କରେ ବେଶ୍ୟାନୃତ୍ୟ ଓ ମଦ୍ୟପାନକୁ ସମାଲୋଚନା କରି ନୂତନ ରୁଚି
ପାଇଁ କ୍ଷେତ୍ର ପ୍ରସ୍ତୁତ କଲେ । ଏହି 'ସୁନ୍ଦର ରୁଚିର କାର୍ଯ୍ୟ'ର ଆଦ୍ୟ ଫଳିତ
ସ୍ୱରୂପ ରାମଶଙ୍କର ରଚନା କଲେ 'କାଞ୍ଚିକାବେରୀ' ନାଟକ । ଏଥିରେ ପ୍ରେମ
ଅଛି; ମାତ୍ର ଏହା ସଂଯତ ଓ ଅନାବିଳ । ଏଥିରେ ବିଭିନ୍ନ ଦୈବ ଅବତାରଣା
ଅଛି; ମାତ୍ର ସବୁ ସେ ସ୍ୱରୁଚିପୂର୍ଣ୍ଣ । ନାଟ୍ୟକାର ଉକ୍ତ ନାଟକରେ 'ନିର୍ଦ୍ଦୋଷ
ଆମୋଦ' ଦେବାକୁ ଉଦ୍ୟମ କରିଅଛନ୍ତି । ଲୋକଙ୍କଠାରେ ନୂତନ ରୁଚି ଓ
ଶୁଚି ସୃଷ୍ଟି କରିବାକୁ ସେ ଉଦ୍ୟମ କରିବା ସଂଗେ ସଂଗେ ଜାତୀୟତା
ଭାବକୁ ଭକ୍ତିରସରେ ରୂପାନ୍ତରିତ କରି ମାର୍ଜିତ କଳାଧର୍ମୀ ଆଧୁନିକ ନାଟକ
ରଚନା କରିବାର ପ୍ରଥମ ପଦକ୍ଷେପ ନେଇଛନ୍ତି ।

## 'କାଞ୍ଚିକାବେରୀ'ରେ ଲଳିତ ବିଭବ--ପ୍ରେମ :

ଓଡ଼ିଶା ଇତିହାସର ଏକ ସୁପରିଚିତ ଘଟଣାକୁ ନେଇ 'କାଞ୍ଚି-
କାବେରୀ' ନାଟକ ରଚିତ ହୋଇଥିଲେହେଁ କିମ୍ବଦନ୍ତୀ ଅବଲମ୍ବନରେ ଏହି
କଥାବସ୍ତୁର ଅନ୍ତଃସ୍ଥଳରେ ପ୍ରେମର ଏକ ଅନାହତ ଫଲ୍‌ଗୁ ପ୍ରବାହିତ ।
ଗଜପତି ପୁରୁଷୋତ୍ତମ ଦେବ ଓ କାଞ୍ଚି ରାଜକନ୍ୟା ପଦ୍ମାବତୀଙ୍କ ମଧ୍ୟରେ
ଥିବା ପ୍ରେମର ସ୍ୱରୂପ-ସଂଘର୍ଷ ଓ ପରିଣତି ସମ୍ପର୍କରେ ନାଟ୍ୟକାର ବର୍ଣ୍ଣନା
କରିଅଛନ୍ତି । ଡକ୍ଟର ନଟବର ସାମନ୍ତରାୟ 'ଓଡ଼ିଆ ସାହିତ୍ୟର
ଇତିହାସ'ରେ ଲେଖିଛନ୍ତି—''ଏକ ଦିଗରେ ପଦ୍ମାବତୀ ପ୍ରତି ପୁରୁଷୋତ୍ତମଙ୍କ
ଆନ୍ତରିକ ଆକର୍ଷଣ, ଅନ୍ୟ ଦିଗରେ ପ୍ରତିଶୋଧର ଅଟଳ ପ୍ରତିଜ୍ଞା ଅର୍ଥାତ୍ ପ୍ରେମ
ଓ ତା'ର ବିପରୀତମୁଖୀ ପ୍ରବୃତ୍ତି ପ୍ରତିଶୋଧ — ଏଇ ଦୁଇ ପ୍ରବୃତ୍ତିର ପାରସ୍ପରିକ
ଦ୍ୱନ୍ଦ୍ୱ ଭିତରେ ଫୁଟି ଉଠିଛି ପୁରୁଷୋତ୍ତମ ଦେବଙ୍କ ଅନ୍ତଃସୌନ୍ଦର୍ଯ୍ୟ ତଥା
ନାଟକର ଲଳିତ କଳାବିଭବ ।'' ବାସ୍ତବିକ ପୁରୁଷୋତ୍ତମ ଦେବଙ୍କ ପ୍ରତି
ପଦ୍ମାବତୀର ଆକର୍ଷଣ ଓ ପଦ୍ମାବତୀ ପ୍ରତି ପୁରୁଷୋତ୍ତମ ଦେବଙ୍କର ପ୍ରେମ,

ପୁରୁଷୋତ୍ତମ ଦେବଙ୍କ ପ୍ରତି କାଞ୍ଚି ରାଜାଙ୍କର ଅପମାନ ଓ ସେହି ଅପମାନର ପ୍ରତିଶୋଧ ନେବା ପାଇଁ ପୁରୁଷୋତ୍ତମ ଦେବଙ୍କର ଅଭିଯାନ ଏବଂ ପଦ୍ମାବତୀଙ୍କୁ ଚଣ୍ଡାଳ ହାତରେ ସମର୍ପଣ କରିବା ପାଇଁ ପ୍ରତିଜ୍ଞା, ଅବଶେଷରେ ମନ୍ତ୍ରୀକୌଶଳ ପଦ୍ମାବତୀ ସହିତ ପୁରୁଷୋତ୍ତମ ଦେବଙ୍କର ବିବାହ—ଏହି କଥାବସ୍ତୁକୁ ନେଇ ଗଢ଼ିଉଠିଛି କାଞ୍ଚିକାବେରୀ ନାଟକ । ନାୟକ ନାୟିକାଙ୍କର ଏହି ପ୍ରେମକାହାଣୀ ଇତିହାସ ସମର୍ଥିତ ନୁହେଁ; ମାତ୍ର ଏହି ମାନବିକ ଅନ୍ତର୍ଦ୍ୱନ୍ଦ୍ୱ ପରିବର୍ତ୍ତେ ଏକ ନାଟକର କଳାବିଭବ ଗଢ଼ି ଉଠିଆନ୍ତା କିପରି ? କିମ୍ବଦନ୍ତୀ ଆଶ୍ରିତ ଏହି ଉପାଖ୍ୟାନକୁ ଇତିହାସଗର୍ଭିତ କରି ନାଟ୍ୟକାର କମନୀୟ ନାଟ୍ୟରୂପ ପ୍ରଦାନ କରିଅଛନ୍ତି ।

ପୁରୁଷୋତ୍ତମଦେବ ରଥଯାତ୍ରା ସମୟରେ ପଦ୍ମାବତୀଙ୍କୁ ପୁରୀ ବଡ଼-ଦାଣ୍ଡରେ ଦେଖିଥିଲେ । ସେହି ପ୍ରଥମ ଦର୍ଶନରୁ ହିଁ ତାଙ୍କ ଅନ୍ତରରେ ସୃଷ୍ଟି ହୋଇଥିଲା ପ୍ରେମ । ପଦ୍ମାବତୀର ଅନୁପସ୍ଥିତିରେ ସେ ତାଙ୍କର ଚିତ୍ରପଟ ଅଙ୍କନ କରିଥିଲେ । ପଦ୍ମାବତୀଙ୍କୁ ଭୁଲିବାକୁ ଚେଷ୍ଟା କରି ମଧ୍ୟ ସେ ଭୁଲିପାରି ନ ଥିଲେ । ଶ୍ରୀ ଜଗନ୍ନାଥଙ୍କର ସେବାକାର୍ଯ୍ୟ କରିଥିବାରୁ କାଞ୍ଚିରାଜା ତାଙ୍କୁ ଚଣ୍ଡାଳ ବୋଲି ଆଖ୍ୟା ଦେଇ ତାଙ୍କ ସହିତ ପଦ୍ମାବତୀଙ୍କୁ ବିବାହ ଦେବାକୁ ମନା କରିଦେଲେ । ଏଠାରୁ ନାଟକରେ ସୃଷ୍ଟି ହେଲା ଦ୍ୱନ୍ଦ୍ୱ । ଗୋଟିଏ ପଟରେ ନାୟକ ନାୟିକାଙ୍କର ପରସ୍ପର ପ୍ରତି ତୀବ୍ର ଆକର୍ଷଣ, ଅନ୍ୟ ପକ୍ଷରେ ଜଗନ୍ନାଥଙ୍କ ସେବକ ଓଡ଼ିଶାର ଗଜପତିଙ୍କୁ କାଞ୍ଚିରାଜାଙ୍କର ଅପମାନ ଓ ଏହି ଅପମାନର ପ୍ରତିଶୋଧ ନେବାପାଇଁ ଅଟଳ ପ୍ରତିଜ୍ଞା—ବାସ୍ତବିକ ଏକ ନାଟକରେ ଅନ୍ତର୍ଦ୍ୱନ୍ଦ୍ୱ ସୃଷ୍ଟି କରିଛି । ପୁରୁଷୋତ୍ତମଦେବ ପଦ୍ମାବତୀଙ୍କୁ ଚଣ୍ଡାଳ ହାତରେ ଦେବାକୁ ପ୍ରତିଜ୍ଞା କରିଥିଲେ ମଧ୍ୟ ତାଙ୍କର ଅନ୍ତର ମଧ୍ୟରେ ଦେଖା ଦେଇଛି ଗଭୀର ଦ୍ୱନ୍ଦ୍ୱ । ପଦ୍ମାବତୀ ମଧ୍ୟ ପୁରୁଷୋତ୍ତମଦେବଙ୍କୁ ଭୁଲିପାରି ନାହାନ୍ତି । ପୁରୁଷୋତ୍ତମଦେବ ହିଁ ତାଙ୍କର ପ୍ରାଣେଶ୍ୱର । ସେ କହିଛନ୍ତି—"ଯେତେବେଳେ ଶ୍ରୀ ଜଗନ୍ନାଥ ଦେବଙ୍କର ରଥଯାତ୍ରା ଉଦ୍ଦେ-ଶ୍ୟରେ ପୁରୀରାଜାଙ୍କୁ ଦେଖିବା କାରଣ ପିତାମାତାଙ୍କ ସଙ୍ଗରେ ଯାତ୍ରା କଲି, ସେତେବେଳେ ଯେଉଁ ପ୍ରଣୟସ୍ୱପ୍ନର ଅଙ୍କୁର ସୂତ୍ରପାତ ହୋଇଥିଲା,

ତାହା ଦୃଢ଼ୀଭୂତ ହେଲା । ତହିଁ ଉତ୍ତାରୁ ପ୍ରାଣେଶ୍ୱରଙ୍କୁ ଦେଖିଲାବେଳଠୁଁ ପ୍ରଣୟ ପ୍ରେମରେ ପରିଣତ ହେଲା, ମନକ୍ଷେତ୍ରରେ ପ୍ରଣୟବୀଜରୁ ପ୍ରେମାଙ୍କୁର ଜାତ ହେଲା, ଯେ ତା' ସ୍ୱପ୍ନରାଜ—ଆଉ କଳ୍ପିତ ପ୍ରାଣେଶ୍ୱରଙ୍କୁ ଚେତେ-ବେଳେ ପ୍ରାଣେଶ୍ୱର ବୋଲି ବୁଝିପାରିଲି ।'' ପଦ୍ମାବତୀଙ୍କର ପୁରୁଷୋତ୍ତମ-ଦେବଙ୍କ ପ୍ରତି ଯେପରି ଗଭୀର ପ୍ରେମ ସୃଷ୍ଟି ହୋଇଛି, ସେହିପରି ପୁରୁଷୋତ୍ତମ ଦେବଙ୍କର ପଦ୍ମାବତୀ ପ୍ରତି ମଧ୍ୟ ଗଭୀର ଅନୁରାଗ ଦୃଷ୍ଟି ହୋଇଛି । ଚଣ୍ଡାଳ ହାତରେ ପଦ୍ମାବତୀଙ୍କୁ ଦେବାକୁ ପ୍ରତିଜ୍ଞା କରି ପୁରୁଷୋତ୍ତମଦେବ ସ୍ଥିର ହୋଇ ରହିପାରି ନାହାନ୍ତି । ତାଙ୍କର ଦୃଷ୍ଟି ହୋଇଛି ଗଭୀର ଅନ୍ତର୍ଦ୍ୱନ୍ଦ୍ୱ । ସେ ଆଜୀବନ ଅବିବାହିତ ରହିବାକୁ ସଂକଳ୍ପ କରିଛନ୍ତି । ଅବଶ୍ୟ ମନ୍ତ୍ରୀ କର୍ତ୍ତୃକ ସମସ୍ୟାର ସମାଧାନ ହୋଇଛି ଓ ପୁରୁଷୋତ୍ତମଦେବ ପଦ୍ମାବତୀଙ୍କୁ ପତ୍ନୀ ରୂପେ ଗ୍ରହଣ କରିଅଛନ୍ତି । ପଦ୍ମାବତୀ ପ୍ରଣୟିନୀ । ତାଙ୍କର ପ୍ରେମ ଅନାବିଳ । ମାତ୍ର ଜନକ ପିତାଙ୍କର ଓ ଜନ୍ମଭୂମିର ବିପର୍ଯ୍ୟୟ ହୋଇଥିଲେ ମଧ୍ୟ ତାଙ୍କର କୌଣସି ପ୍ରତିକ୍ରିୟା ଦେଖାଯାଇ ନାହିଁ । ତାଙ୍କ ପକ୍ଷରେ ସତେ ଯେପରି ପ୍ରିୟତମଙ୍କୁ ପାଇବାହିଁ ଥିଲା ମୁଖ୍ୟ କଥା ।

## 'କାଞ୍ଚି କାବେରୀ'—ଶିଳ୍ପପ୍ରକରଣର ଆଦର୍ଶ :

'କାଞ୍ଚିକାବେରୀ' ପୂର୍ବରୁ 'ବାବାଜୀ' ନାଟକ ରଚିତ ହୋଇଥିଲେହେଁ ସଂସ୍କୃତ ଓ ଇଂରାଜୀ ନାଟକ-ରୀତି ଅନୁଯାୟୀ 'କାଞ୍ଚିକାବେରୀ' ହିଁ ପ୍ରଥମ ସଫଳ ଐତିହାସିକ ନାଟକ । ଏହି ନାଟକର ଗଠନ କଳା ପ୍ରତି ଦୃଷ୍ଟି ଦେଲେ ଏହା ଉଭୟ ନାଟକର ଶିଳ୍ପପ୍ରକରଣର ଆଦର୍ଶକୁ ଅନୁସରଣ କରିଥିବା ଜଣାଯାଏ । କେବଳ ନାଟକ ନୁହେଁ; ଯାତ୍ରା ଓ ଓଡ଼ିଆ କାବ୍ୟ ପରଂପରାର ଆଦର୍ଶ ମଧ୍ୟ ଏଥିରେ ଅନୁସୃତ ହୋଇଥିବା ଲକ୍ଷ୍ୟ କରାଯାଇ-ଥାଏ । ପ୍ରଥମତଃ ଓଡ଼ିଆ ଯାତ୍ରାର କ୍ଷୀଣ ପ୍ରଭାବ 'କାଞ୍ଚିକାବେରୀ'ରେ ପଡ଼ିଥିବା ଲକ୍ଷଣୀୟ । ଯାତ୍ରାର ଆଙ୍ଗିକଗତ ପ୍ରଭାବ ଏଥିରେ ନାହିଁ; ମାତ୍ର ଯାତ୍ରାରେ ବ୍ୟବହୃତ ସଂଗୀତର ଶୈଳୀ ଏଥିରେ ଅନୁସୃତ ହୋଇଛି । ଯଦିଓ ସଂସ୍କୃତ ନାଟକରେ ବିଦୂଷକର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି; ମାତ୍ର ଓଡ଼ିଆ

ଯାତ୍ରାରେ ଯେପରି ବିଦୂଷକଙ୍କୁ ହାସ୍ୟରସ ସୃଷ୍ଟି କରିବା ପାଇଁ ଅବତାରଣା କରାଯାଉଥିଲା, ସେହି ଆଦର୍ଶର ପ୍ରଭାବ କାଞ୍ଚିକାବେରୀରେ ଘଟିଥିବା ଜଣାଯାଏ । ଦ୍ୱିତୀୟତଃ ମଧ୍ୟଯୁଗୀୟ ଓଡ଼ିଆ ବୈଷ୍ଣବ କାବ୍ୟ ପରମ୍ପରାରେ ସଖୀମାନଙ୍କର ଭୂମିକା ଯେପରି ଭାବରେ ବର୍ଣ୍ଣିତ ହୋଇଥିଲା, 'କାଞ୍ଚି-କାବେରୀ'ରେ ଦୂର୍ଯ୍ୟବାଳା, ଶଶୀକଳା ଓ ଚନ୍ଦ୍ରା ଚରିତ୍ର ମାଧ୍ୟମରେ ସେହି ଆଦର୍ଶକୁ ନାଟ୍ୟରୂପ ପ୍ରଦାନ କରାଯାଇଥିବା ମଧ୍ୟ ଅନୁମେୟ ଏବଂ ପରବର୍ତ୍ତୀ କାଳରେ ୧୯୪୭ ମସିହାରେ କାଳିଚରଣ ପଟ୍ଟନାୟକଙ୍କ ଦ୍ୱାରା ରଚିତ 'ଅଭିଯାନ' ନାଟକରେ ଏହି ସଖୀମାନଙ୍କୁ ଭିନ୍ନ ଭାବରେ ଦେଖିବାକୁ ମିଳେ । ଯାତ୍ରା ଓ ମଧ୍ୟଯୁଗୀୟ କାବ୍ୟରେ ସଖୀମାନଙ୍କର ଭୂମିକାର ପ୍ରଭାବ 'କାଞ୍ଚି-କାବେରୀ'ରେ ଥିଲେ ହେଁ ଏହା ଏକାନ୍ତ ଗୌଣ ।

'କାଞ୍ଚିକାବେରୀ' ଶିଳ୍ପପ୍ରକରଣର ପ୍ରଧାନ ଆଦର୍ଶ ସଂସ୍କୃତ ଓ ପ୍ରାକୃତ ନାଟକ । ଯେତେବେଳେ ଯଥେଷ୍ଟ ଓଡ଼ିଶାରେ ବଙ୍ଗଳା ନାଟକ ଅଭିନୀତ ହେଉଥିଲା, ରାମଶଙ୍କର ଇଚ୍ଛାକୃତ ଭାବରେ ବଙ୍ଗଳା ନାଟକର ପ୍ରଭାବକୁ ଏଡ଼ାଇବାକୁ ଉଦ୍ୟମ କରିଛନ୍ତି । ବଙ୍ଗଳା ନାଟକର ପ୍ରତିକ୍ରିୟାରେ ସେ ଓଡ଼ିଆ ନାଟକ ରଚନା କରିଥିବାରୁ ଏପରି ଉଦ୍ୟମ କରିବା ତାଙ୍କ ପକ୍ଷରେ ସ୍ୱାଭାବିକ; ମାତ୍ର ବଙ୍ଗଳା ନାଟକରେ ବ୍ୟବହୃତ ଅମିତ୍ରାକ୍ଷର ଛନ୍ଦର ସଂଳାପକୁ ସେ 'କାଞ୍ଚିକାବେରୀ'ରେ ଗ୍ରହଣ କରିଅଛନ୍ତି । ଅବଶ୍ୟ ଏହି ଛନ୍ଦକୁ ସେ ଇଂରାଜୀ ନାଟକରୁ ଗ୍ରହଣ କରିଥାଇ ପାରନ୍ତି । 'କାଞ୍ଚିକାବେରୀ'ର କଥାବସ୍ତୁକୁ ସଂସ୍କୃତ ନାଟକର ମୁଖ-ପ୍ରତିମୁଖ-ଗର୍ଭ-ବିମର୍ଷ— ନିର୍ବହଣ ଆଦି ପଞ୍ଚସନ୍ଧି ଘେନି ବିନ୍ୟସ୍ତ କରାଯାଇଅଛି । ପ୍ରଥମ ଅଭିନୟରେ ଦୁଇଗୋଟି ଦୃଶ୍ୟ ମଧ୍ୟଦେଇ କାଞ୍ଚି ଯୁଦ୍ଧଯାତ୍ରା ପାଇଁ ପୁରୀରେ ଗଜପତି ପୁରୁଷୋତ୍ତମ ଦେବଙ୍କର ପ୍ରସ୍ତୁତି ଓ ଯାତ୍ରାରମ୍ଭ, ଦ୍ୱିତୀୟ ଅଭିନୟରେ ମାତ୍ର ଗୋଟିଏ ଦୃଶ୍ୟ ମଧ୍ୟଦେଇ ଆଡପୁର ଦାଣ୍ଡରେ ମାଣିକ୍ୟ ଚରିତ୍ରର ଅବତାରଣା ଦ୍ୱାରା ଶ୍ରୀ ଜଗନ୍ନାଥଙ୍କର ସାହାଯ୍ୟ-ପ୍ରାପ୍ତିର ନିଶ୍ଚିତତା ଅନୁଭବ କରି ବିଜୟ ଲାଭ ଆଶାରେ ଅହଂକାର, ତୃତୀୟ ଅଭିନୟରେ ପାଞ୍ଚଗୋଟି ଦୃଶ୍ୟ ମଧ୍ୟଦେଇ କାଞ୍ଚିରାଜାଙ୍କର ବିଜୟ ଓ ଆନନ୍ଦ, ପଦ୍ମାବତୀ ପାଇଁ ସ୍ୱୟମ୍ବର ବ୍ୟବସ୍ଥା ଓ ପୁରୁଷୋତ୍ତମଦେବଙ୍କ

ପ୍ରତି ପଦ୍ମାବତୀଙ୍କର ଗଭୀର ପ୍ରେମ ଓ ଅନ୍ତର୍ଦ୍ୱନ୍ଦ୍ୱ, ଚତୁର୍ଥ ଅଭିନୟରେ ଦୁଇଟି ଦୃଶ୍ୟ ମଧ୍ୟଦେଇ ପୁରୁଷୋତ୍ତମ ଦେବଙ୍କର ପରାଜୟଜନିତ ଗଭୀର ଅନୁତାପ ଓ ଶ୍ରୀ ଜଗନ୍ନାଥଙ୍କ କରୁଣାରୁ ପ୍ରତିଜୟ ଏବଂ ପଦ୍ମାବତୀଙ୍କୁ ବନ୍ଦିନୀ କରି ପୁରୀ ପ୍ରତ୍ୟାବର୍ତ୍ତନ, ପଞ୍ଚମ ଅଭିନୟରେ ତିନୋଟି ଦୃଶ୍ୟ ମଧ୍ୟଦେଇ ପୁରୁଷୋତ୍ତମଦେବଙ୍କ ସହିତ ପଦ୍ମାବତୀଙ୍କଙ୍କର ମିଳନ ବର୍ଣ୍ଣିତ ହୋଇଅଛି । ଏହି କଥାବସ୍ତୁ ମଧ୍ୟରେ ପଦ୍ମାବତୀ ଓ ପୁରୁଷୋତ୍ତମଦେବଙ୍କର ପ୍ରେମ ମୁଖ୍ୟ ସ୍ଥାନ ଲାଭ କରିଛି ଏବଂ ଉଭୟଙ୍କର ମିଳନରେ ଏହି ପ୍ରେମର ପୂର୍ଣ୍ଣତା ଲାଭ ହୋଇଛି । ଏ କ୍ଷେତ୍ରରେ ସଂସ୍କୃତ ନାଟକର ରୀତି ଅନୁସୃତ ।

ସଂସ୍କୃତ ନାଟକରେ ସାଧାରଣତଃ ନାୟକ ଅତିପ୍ରାକୃତ ଶକ୍ତିର ସାହାଯ୍ୟ ଲାଭ କରିଥାଏ । 'କାଞ୍ଚିକାବେରୀ'ରେ ଏହି ଆଦର୍ଶ ଗୃହୀତ ହୋଇଅଛି । ପୁରୁଷୋତ୍ତମଦେବ ଦୈବ ବଳରେ ବଳୀୟାନ । ତାଙ୍କୁ ଜଗନ୍ନାଥ ଓ ବଳଭଦ୍ର ଯୁଦ୍ଧରେ ସାହାଯ୍ୟ କରିବାକୁ ସୈନିକ ବେଶରେ ଯାଇଅଛନ୍ତି । ଯୁଦ୍ଧ ଜୟ କରି ପ୍ରତ୍ୟାବର୍ତ୍ତନ କଲାବେଳେ ନଦୀର ଅସ୍ୱାଭାବିକ ବୃଦ୍ଧି ଓ ତଦ୍ଦ୍ୱାରା କାଞ୍ଚି ସେନାବାହିନୀର ବିପର୍ଯ୍ୟୟ ସେହି ଅତିପ୍ରାକୃତ ଶକ୍ତି ସମ୍ବନ୍ଧରେ ସୂଚନା ଦେଇଥାଏ । ଏସବୁ ବର୍ଣ୍ଣନାକୁ ନାଟ୍ୟକାର ନାଟକରେ ଇଙ୍ଗିତ ଦେଇଛନ୍ତି ମାତ୍ର । ପ୍ରକୃଷ୍ଟ ସଂସ୍କୃତ ନାଟକରେ ଯୁଦ୍ଧ ଓ ବିବାହ ଆଦି ଦୃଶ୍ୟ ଦେଖାଇବା ନିଷିଦ୍ଧ । ସେହି ଆଦର୍ଶ ଅନୁଯାୟୀ କାଞ୍ଚି ରାଜା ଓ ପୁରୁଷୋତ୍ତମ ଦେବଙ୍କ ମଧ୍ୟରେ ଦୁଇଥର ଯୁଦ୍ଧ ହୋଇଥିଲେ ମଧ୍ୟ ତାହା ନାଟକରେ ପ୍ରଦର୍ଶିତ ହୋଇ ନାହିଁ । କେବଳ ଯୁଦ୍ଧ ସମ୍ବନ୍ଧରେ ଇଙ୍ଗିତ ରହିଛି । ସେହିପରି ପଦ୍ମାବତୀ ଓ ପୁରୁଷୋତ୍ତମଦେବଙ୍କର ବିବାହ ମଧ୍ୟ ସୂଚନାତ୍ମକ ଭାବରେ ପ୍ରଦାନ କରାଯାଇଅଛି । ସଂସ୍କୃତ ରୀତି ଅନୁସାରେ ନାଟ୍ୟକାର ଏଥିରେ ହାସ୍ୟରସର ଅବତାରଣା ପାଇଁ ବିଦୂଷକ ଚରିତ୍ର ବର୍ଣ୍ଣନା କରିଅଛନ୍ତି । 'କର୍ପୂରମଞ୍ଜରୀ' ସଟ୍ଟକରେ ବିଦୂଷକ କପିଞ୍ଜଳ ବ୍ରାହ୍ମଣର ଚରିତ୍ରକୁ ଯେପରି ଭାବରେ ବର୍ଣ୍ଣନା କରାଯାଇଛି, ତାର ପ୍ରଭାବ 'କାଞ୍ଚିକାବେରୀ'ର ବିଦୂଷକ ଚରିତ୍ରରେ ଦେଖିବାକୁ ମିଳେ । ପ୍ରକୃଷ୍ଟ ସଂସ୍କୃତ ନାଟକରେ ଯେପରି ଚରିତ୍ରମାନଙ୍କର ଅନ୍ତର୍ନିହିତ ସମତା ରକ୍ଷା କରାଯାଇଥାଏ, ଆଲୋଚ୍ୟ 'କାଞ୍ଚିକାବେରୀ'ରେ ସେହିପରି

ବିଭିନ୍ନ ଚରିତ୍ରମାନଙ୍କ ମଧ୍ୟରେ ସମତାରକ୍ଷା କରାଯିବାର ଚେଷ୍ଟା କରାଯାଇ-ଅଛି । ନାୟକ ପୁରୁଷୋତ୍ତମଦେବ ଓଡ଼ିଶାର ଗଜପତି । ତାଙ୍କ ସହିତ ସମତା ରକ୍ଷା କରି କାଞ୍ଚିରାଜାଙ୍କର ବର୍ଣ୍ଣନା କରାଯାଇଅଛି । ପୁରୁଷୋତ୍ତମଦେବଙ୍କର ମନ୍ତ୍ରୀ, ସେନାପତି, ସଭାସଦ୍‌ବର୍ଗଙ୍କ ପରି କାଞ୍ଚିରାଜାଙ୍କର ମନ୍ତ୍ରୀ, ସେନାପତି ଓ ସଭାସଦ୍‌ମାନଙ୍କର ଅବତାରଣା କରାଯାଇଅଛି । ପୁରୁଷୋତ୍ତମଦେବଙ୍କର ଯେପରି ବୀରତ୍ୱ, ଐଶ୍ୱର୍ଯ୍ୟ, ଭକ୍ତି ପ୍ରଭୃତି ଗୁଣ ବର୍ଣ୍ଣିତ ହୋଇଛି, ସେହିପରି କାଞ୍ଚିରାଜାଙ୍କର ଏସବୁ ଗୁଣ ମଧ୍ୟ ବର୍ଣ୍ଣିତ; ମାତ୍ର କାଞ୍ଚିରାଜାଙ୍କ ଚରିତ୍ରରେ ଏସବୁ ଯଥାର୍ଥ ବିକଶିତ ହୋଇ ନାହିଁ । ଶ୍ରୀ ଜଗନ୍ନାଥ ଓ ଶ୍ରୀ ଗଣନାଥ ଭକ୍ତ ନାଟକରେ ମଧ୍ୟ ଭାବ-ସାମ୍ୟ ରକ୍ଷା କରିବା ପାଇଁ ଉଦ୍ଦିଷ୍ଟ । ସ୍ତ୍ରୀ ଚରିତ୍ରଗୁଡ଼ିକ କାଞ୍ଚିରାଜାଙ୍କ ପକ୍ଷର ହେଲେହେଁ ପରିଣତିରେ ପଦ୍ମାବତୀ ପୁରୁଷୋତ୍ତମ ଦେବଙ୍କର ପତ୍ନୀ ହୋଇଅଛନ୍ତି । ଏତଦ୍‌ବ୍ୟତୀତ ନାୟିକା ପଦ୍ମାବତୀ ଚରିତ୍ରର ବିକାଶ ପାଇଁ ନାଟ୍ୟକାର ଶଶୀକଳା, ସୂର୍ଯ୍ୟବାଳା ଓ ଭଦ୍ରା ଚରିତ୍ରର ଅବତାରଣା କରିଅଛନ୍ତି । କାଳିଦାସଙ୍କର 'ଅଭିଜ୍ଞାନ ଶାକୁନ୍ତଳମ୍' ନାଟକର ନାୟିକା ଶକୁନ୍ତଳା ଓ ତାଙ୍କର ପ୍ରିୟସଖୀ ପ୍ରିୟମ୍ବଦା ଏବଂ ଅନସୂୟା ପ୍ରସଙ୍ଗକୁ ଏହା ସ୍ମରଣ ଦେଇଥାଏ ।

'କାଞ୍ଚୀକାବେରୀ' ନାଟକର ପ୍ରସ୍ତାବନାରେ ସୂତ୍ରଧର, ନଟ ଓ ନଟୀର ଯେପରି ବର୍ଣ୍ଣନା ରହିଅଛି, ତାହା ସଂସ୍କୃତ ବା ପ୍ରାକୃତ ନାଟକର ପ୍ରତ୍ୟକ୍ଷ ଫଳ । ନାଟ୍ୟକାର ସଂସ୍କୃତ ରୀତି ଅନୁସରଣ କରି ପ୍ରଥମେ ନାନ୍ଦୀ ମୁଖରେ ଗୋଟିଏ ଶ୍ଳୋକ ଉଲ୍ଲେଖ କରିଅଛନ୍ତି ଏବଂ ପରେ ସୂତ୍ରଧର, ନଟ ଓ ନଟୀଙ୍କର ଆବିର୍ଭାବ ଘଟି ନାଟକର ଅଭିନୟ ସଂପର୍କରେ କଥାବାର୍ତ୍ତା କରିଅଛନ୍ତି । ପ୍ରାକୃତ ସଟ୍ଟକ 'କର୍ପୂରମଞ୍ଜରୀ'ରେ ଏହି ଆଦର୍ଶ ନିହିତ । ପ୍ରାକୃତ ଭାଷାରେ ନାଟକ ରଚନା କରିବା ବିଷୟରେ ସେଥିରେ ଯେପରି ବର୍ଣ୍ଣନା କରାଯାଇଛି, ଏବଂ ନାଟକ ଅଭିନୟ ହେବାର ସୂଚନା ଯେପରି ନଟ ମୁଖରେ ପ୍ରଦତ୍ତ ହୋଇଛି, ସେହିପରି 'କାଞ୍ଚୀକାବେରୀ'ରେ ମଧ୍ୟ ବର୍ଣ୍ଣନା କରାଯାଇଅଛି । ଅତଏବ ପ୍ରସ୍ତାବନା ସଂଯୋଜନା ଦୃଷ୍ଟିରୁ 'କାଞ୍ଚୀକାବେରୀ' ସଂସ୍କୃତ ଓ ପ୍ରାକୃତ ନାଟକ ଦ୍ୱାରା ପ୍ରଭାବିତ । 'କାଞ୍ଚୀକାବେରୀ'ରେ ସଂସ୍କୃତ ନାଟକର

ଆଦର୍ଶ ଗ୍ରହଣ କରାଯାଇଥିଲେ ହେଁ କେତେକ ସ୍ଥଳରେ ବ୍ୟତିକ୍ରମ ଦେଖା-
ଯାଇଥାଏ । ସଂସ୍କୃତ ନାଟକ ମୁଖ୍ୟତଃ ଦୃଶ୍ୟକାବ୍ୟ ଏବଂ ଏଥିରେ ବହୁଳ
ପରିମାଣରେ ଶ୍ଳୋକର ବ୍ୟବହାର କରାଯାଇଥାଏ । ରାମଶଙ୍କର ଅଭିନୟ
ଉପଯୋଗୀ ନାଟକ ରଚନା କରିଥିବାରୁ 'କାଞ୍ଚିକାବେରୀ'ରେ ସଙ୍ଗୀତର
ବହୁଳତାକୁ ପରିହାର କରାଯାଇ ବାସ୍ତବଧର୍ମୀ ଭାଷାର ବ୍ୟବହାର
କରାଯାଇଅଛି ।

'କାଞ୍ଚିକାବେରୀ' ସଂସ୍କୃତ ନାଟକର ପ୍ରତ୍ୟକ୍ଷ ଫଳ ହେଲେହେଁ ଇଂରାଜୀ
ନାଟକର ପ୍ରଭାବରୁ ମଧ୍ୟ ଏହା ମୁକ୍ତ ନୁହେଁ । ରାମଶଙ୍କର 'କାଞ୍ଚିକାବେରୀ'
ରଚନା କଲାବେଳକୁ ଏଫ୍. ଏ. ପାଶ କରି ସାରିଥିଲେ । ତେଣୁ ସେ
ସେକ୍ସପିଅରଙ୍କ ନାଟକାବଳୀ ଅଧ୍ୟୟନ କରିବାର ସୁଯୋଗ ଲାଭ କରିଥିବେ ।
ସେକ୍ସପିୟରୀୟ ନାଟ୍ୟଶୈଳୀର ପ୍ରଭାବ କାଞ୍ଚିକାବେରୀରେ ଦେଖିବାକୁ
ମିଳିଥାଏ । ଇଂରାଜୀ ସାହିତ୍ୟରେ ପଞ୍ଚାଙ୍କ ବିଶିଷ୍ଟ ନାଟକ ରଚନା ପଦ୍ଧତି
ସାଧାରଣତଃ ପ୍ରଚଳିତ ଥିଲା । ରାମଶଙ୍କର ଏହି ଆଦର୍ଶକୁ ଗ୍ରହଣ କରିଥିବେ ।
ଏତଦ୍‌ବ୍ୟତୀତ ସେକ୍ସପିୟରଙ୍କ ନାଟକରେ ଗଦ୍ୟ ଓ ଅମିତ୍ରାକ୍ଷର ଛନ୍ଦର
ବହୁଳ ବ୍ୟବହାର ଦେଖିବାକୁ ମିଳେ । ରାମଶଙ୍କର 'କାଞ୍ଚିକାବେରୀ'ରେ ଏହି
ଆଦର୍ଶକୁ ଗ୍ରହଣ କରିଥିଲା ପରି ମନେହୁଏ । ସମାନ୍ତରାଳ ଚରିତ୍ର ଅର୍ଥାତ୍
ଚରିତ୍ର ଗୁଡ଼ିକର ଅନ୍ତର୍ନିହିତ ସମତା ସୃଷ୍ଟି ଉପରେ ମଧ୍ୟ ଇଂରାଜୀ ନାଟକର
ପ୍ରଭାବ ଲକ୍ଷ୍ୟ କରାଯାଇଥାଏ । ସେକସପିୟରଙ୍କ ନାଟକର କୋର୍ଟ-ଜେଷ୍ଟର
ଚରିତ୍ରର ପ୍ରଭାବ ମଧ୍ୟ 'କାଞ୍ଚିକାବେରୀ'ରେ ବିଦୂଷକ ଚରିତ୍ରରେ ପରିଲକ୍ଷିତ ।
କେତେକ ସଂଳାପରେ ମଧ୍ୟ ଇଂରାଜୀ ଭାଷାର ପ୍ରଭାବ ଦେଖିବାକୁ ମିଳିଥାଏ ।
ଇଂରାଜୀ, ବଙ୍ଗଳା, ଯାତ୍ରା ପ୍ରଭୃତିର ପ୍ରଭାବ 'କାଞ୍ଚିକାବେରୀ'ରେ ପଡ଼ିଥିଲେ
ହେଁ ସଂସ୍କୃତ ନାଟକଦ୍ୱାରା ଏହା ଯେ ବିଶେଷ ଭାବରେ ପ୍ରଭାବିତ—ଏ
କଥାକୁ ଅସ୍ୱୀକାର କରାଯାଇ ନ ପାରେ ।

## 'କାଞ୍ଚୀକାବେରୀ'ରେ ଚରିତ୍ର ସମାବେଶ :

'କାଞ୍ଚୀକାବେରୀ'ରେ ନାଟ୍ୟକାର ରାମଶଙ୍କର ମୁଖ୍ୟତଃ ଇତିହାସରୁ ଚରିତ୍ର ଗ୍ରହଣ କରିଥିଲେହେଁ ନାଟ୍ୟୀୟ ଆବେଦନ ଦୃଷ୍ଟିରୁ ସେ ସ୍ଥଳ-ବିଶେଷରେ କେତେକ କାଳ୍ପନିକ ଚରିତ୍ରର ଅବତାରଣା କରିଅଛନ୍ତି । ଇତିହାସର ନିର୍ଜୀବ ଚରିତ୍ରକୁ ସେ ନୂତନ ମାନବିକ ଚେତନାରେ ଜୀବନ୍ତ କରି-ଦେଇଅଛନ୍ତି । ଆଲୋଚ୍ୟ ନାଟକରେ ରାଜା ପୁରୁଷୋତ୍ତମ ଦେବ ଓ କାଞ୍ଚି-ରାଜା ସାଲୁ ନରସିଂହ ଦେବ ଐତିହାସିକ ଚରିତ୍ର; ମାତ୍ର ନାଟ୍ୟକାର ସେମାନଙ୍କୁ ସମାନ୍ତରାଳ ଚରିତ୍ର ଭାବରେ ଗ୍ରହଣ କରି ସେମାନଙ୍କ ଅନ୍ତରର ମାନବିକ ଦ୍ୱନ୍ଦ୍ୱକୁ ଯେପରି ଦେଖାଇଅଛନ୍ତି, ତାହା ଐତିହାସିକ ନ ହେଲେ ମଧ୍ୟ ଚିରନ୍ତନ ମାନବିକ ଭାବସ୍ପନ୍ଦନର ଯଥାର୍ଥ ଦ୍ୟୋତକ । ପୁରୁଷୋତ୍ତମ ଦେବଙ୍କୁ ନାଟ୍ୟକାର ଜଣେ ବୀର ଅପେକ୍ଷା ଜଣେ ଭକ୍ତ ଭାବରେ ଅଧିକ ପରିମାଣରେ ବର୍ଣ୍ଣନା କରିଅଛନ୍ତି । ସେ ଦୈବ ବଳରେ ବଳୀୟାନ । ନିଜ ଉପରୁ ସେ ବିଶ୍ୱାସ ଓ ଆସ୍ଥା ହରାଇ ଜଗନ୍ନାଥଙ୍କଠାରେ ନିର୍ଭର କରିଅଛନ୍ତି । ତାଙ୍କର କାଞ୍ଚିବିଜୟ ଓ ପଦ୍ମାବତୀଙ୍କ ସହିତ ତାଙ୍କର ମିଳନ କ୍ଷେତ୍ରରେ ଶ୍ରୀ ଜଗନ୍ନାଥଙ୍କର କରୁଣା ବିଦ୍ୟମାନ । କାଞ୍ଚିବିଜୟ ମୂଳରେ ପଦ୍ମାବତୀଙ୍କୁ ଲାଭ କରିବାର ଆକାଂକ୍ଷା ଓ କାଞ୍ଚିରାଜାଙ୍କର ଅପମାନର ପ୍ରତିଶୋଧ ବାସନା ବିଦ୍ୟମାନ; ମାତ୍ର ଯୁଦ୍ଧ ବିଜୟ ପରେ ସେ ପଦ୍ମାବତୀଙ୍କୁ ଚଣ୍ଡାଳ ହାତରେ ସମର୍ପଣ କରିବାକୁ କଠୋର ପ୍ରତିଜ୍ଞା କରିଅଛନ୍ତି । ଏପରି ପ୍ରତିଜ୍ଞା କରି ନ ଥିଲେ ହୁଏତ ଓଡ଼ିଶାର ଜନସାଧାରଣ ତାଙ୍କୁ ବ୍ୟକ୍ତିଗତ ସ୍ୱାର୍ଥପାଇଁ କାହ୍ନିପ୍ରୀତ ହୋଇଥିଲେ ବୋଲି ସମାଲୋଚନା କରିଥାନ୍ତେ । ଏହି କଠୋର ପ୍ରତିଜ୍ଞାହିଁ ରାଜା ପୁରୁଷୋତ୍ତମଦେବ ଓ ରକ୍ତମାଂସଦେହଧାରୀ ପ୍ରେମିକ ପୁରୁଷୋତ୍ତମ ଦେବଙ୍କ ଅନ୍ତରର ଦ୍ୱନ୍ଦ୍ୱକୁ ଦେଖାଇଅଛି ଏବଂ ଅବଶେଷରେ ସେ ପଦ୍ମା-ବତୀଙ୍କୁ ବିବାହ କରିଛନ୍ତି । ଅତଏବ ନାଟ୍ୟକାର ଏହି ଐତିହାସିକ ଚରିତ୍ରକୁ ମାନବୀୟ ଗୁଣରେ ବିଭୂଷିତ କରି ନାଟ୍ୟରସ ସୃଷ୍ଟି କରିବାରେ ଉଦ୍ୟମ କରିଅଛନ୍ତି । ସେହିପରି ସାଲୁ ନରସିଂହ ଦେବ ଇତିହାସ ସମର୍ଥିତ ଚରିତ୍ର; ମାତ୍ର ତାଙ୍କର ଅନ୍ତରର ଭାବକୁ ନାଟ୍ୟକାର ମାନବୀୟ ଦୃଷ୍ଟିକୋଣରୁ

ରୂପାୟିତ କରିଅଛନ୍ତି । ପଦ୍ମାବତୀ ହିଁ ନାଟକର ନାୟିକା । ଏହି ଚରିତ୍ର ଇତିହାସସମର୍ଥିତ ନୁହେଁ । ଇତିହାସର ରୂପାମ୍ବିକା ପଦ୍ମାବତୀ ସ୍ଥବରେ ଓଡ଼ିଶାର ସାମାଜିକ ଜୀବନରେ ପ୍ରତିଷ୍ଠା ଲାଭ କଲେ । ଏହି ଚରିତ୍ର ସର୍ବାନ୍ତକରଣରେ ଏକ ପ୍ରେମମୟୀ ଚରିତ୍ର । ଦେଶ, ଜାତି ଓ ଜନକର ସ୍ୱାର୍ଥକୁ ଜଳାଞ୍ଜଳି ଦେଇ ସେ ପୁରୁଷୋତ୍ତମଦେବଙ୍କୁ ପତିରୂପେ ବରଣ କରିବାକୁ ସିଦ୍ଧାନ୍ତ କରିଅଛନ୍ତି । ପଦ୍ମାବତୀଙ୍କର ସଖୀଦ୍ୱୟୀ ଶଶୀକଳା, ପୂର୍ଣ୍ଣିବାଳା ଓ ଭଦ୍ରା ସମ୍ପୂର୍ଣ୍ଣ କାଳ୍ପନିକ ଚରିତ୍ର ଏବଂ ଶକୁନ୍ତଳା ନାଟକର ଅନସୂୟା ଓ ପ୍ରିୟମ୍ବଦାଙ୍କର ସମଧର୍ମିଣୀ ।

ଏତଦବ୍ୟତୀତ ନାଟ୍ୟକାର ଆଲୋଚ୍ୟ ନାଟକରେ ବିଦୂଷକ, ମନ୍ତ୍ରୀ, ସେନାପତି ଏବଂ ଅନ୍ୟାନ୍ୟ ଚରିତ୍ରମାନଙ୍କର ଅବତାରଣା କରିଅଛନ୍ତି । ଏସବୁ ଚରିତ୍ରଗୁଡ଼ିକ କାଳ୍ପନିକ ହେଲେହେଁ ରାଜକୀୟ ପରିବେଶରୁ ସ୍ୱତନ୍ତ୍ର ନୁହନ୍ତି । ସଂସ୍କୃତ ନାଟକର ରୀତି ଅନୁସରଣରେ ନାଟ୍ୟକାର ଏ ସମସ୍ତ ଚରିତ୍ରର ଅବତାରଣା କରିଥିବା ମନେ ହୋଇଥାଏ ।

## 'କାଞ୍ଚୀକାବେରୀ'ରେ ସଂଳାପ ଓ ସଂଗୀତ :

'କାଞ୍ଚିକାବେରୀ'ର ସଳାପ ଓ ଭାଷା ସମ୍ପର୍କରେ ଆଲୋଚନା କରି 'ଓଡ଼ିଆ ନାଟ୍ୟକଳା'ରେ ଗିରିଜାଶଙ୍କର ରାୟ ଲେଖିଛନ୍ତି—''ସଂସ୍କୃତ ନାଟକରେ ଯେପରି ସଂସ୍କୃତ ଓ ପ୍ରାକୃତ ଉଭୟ ପ୍ରକାର ଭାଷା ବ୍ୟବହୃତ ହୁଏ, ଏଥିରେ ସେପରି ନାହିଁ; ବରଂ ଏକ ଦିଗରେ ସଂସ୍କୃତାନୁସାରୀ ସାହିତ୍ୟିକ ଭାଷା ଓ ଅନ୍ୟ ଦିଗରେ ଜନସାଧାରଣଙ୍କ ମଧ୍ୟରେ ପ୍ରଚଳିତ ଭାଷାର ମଧ୍ୟବର୍ତ୍ତୀ ଭାଷା ବ୍ୟବହାର କରି ଶିକ୍ଷିତ ଅଶିକ୍ଷିତ ଉଭୟ ପ୍ରକାର ଦର୍ଶକମାନଙ୍କୁ ଆନନ୍ଦ ଦେବାର ଚେଷ୍ଟା କରିଅଛନ୍ତି ।'' ଏହାସତ୍ତ୍ୱେ 'କାଞ୍ଚି-କାବେରୀ'ର ଭାଷା ବାସ୍ତବଧର୍ମୀ ହୋଇପାରି ନାହିଁ । ଏହି ଭାଷା ବ୍ୟବହାର ଦ୍ୱାରା ହୁଏତ ନାଟକର ସାହିତ୍ୟିକ ମୂଲ୍ୟ ସରକ୍ଷିତ ହୋଇଛି; ମାତ୍ର ନାଟକୀୟତା ଦୃଷ୍ଟିରୁ ସ୍ଥଳବିଶେଷରେ ତ୍ରୁଟିପୂର୍ଣ୍ଣ ବିବେଚିତ ହୋଇଥାଏ ।

'କାଞ୍ଚିକାବେରୀ'ର ସଂଳାପ ମୁଖ୍ୟତଃ ଦ୍ୱିବିଧ—ପରଗତ ସଂଳାପ ଓ ସ୍ୱଗତ ସଂଳାପ । ଆଧୁନିକ ନାଟକରେ ସ୍ୱଗତ ସଂଳାପର ବ୍ୟବହାର ଦୋଷାବହ; ମାତ୍ର କାଞ୍ଚିକାବେରୀରେ ଏ ଧରଣର ସଂଳାପର ବହୁଳ ବ୍ୟବହାର ଦେଖିବାକୁ ମିଳିଥାଏ । ଏହାଦ୍ୱାରା ନାଟକର କଳାଗତ ମୂଲ୍ୟ ହ୍ରାସ ପାଇଅଛି । ଏହି ସଂଳାପଗୁଡ଼ିକ ଗଦ୍ୟଧର୍ମୀ ଏବଂ ଅମିତ୍ରାକ୍ଷର ଛନ୍ଦଧର୍ମୀ । ନାଟ୍ୟକାର କେବଳ ଅଭିନୟ ପାଇଁ ନାଟକ ରଚନା ନ କରି ସାହିତ୍ୟ ପାଇଁ ନାଟକ ରଚନା କରିଥିବାରୁ ସେ ଅମିତ୍ରାକ୍ଷର ଛନ୍ଦଧର୍ମୀ ସଂଳାପର ବ୍ୟବହାର କରିଅଛନ୍ତି । ଏହି ଛନ୍ଦର ବ୍ୟବହାର ଦ୍ୱାରା ନାଟକରେ କାବ୍ୟତ୍ୱର ପରିଚୟ ମିଳିଥାଏ । ସେକ୍ସପିଅରଙ୍କ ନାଟକରେ ଏ ଧରଣର ସଂଳାପର ବହୁଳ ବ୍ୟବହାର ଦେଖିବାକୁ ମିଳେ । ସେତେବେଳେ ବଙ୍ଗଳାରେ ମଧ୍ୟ ଅମିତ୍ରାକ୍ଷର ଛନ୍ଦଧର୍ମୀ ସଂଳାପ ନାଟକରେ ବ୍ୟବହୃତ ହେଉଥାଏ । ରାମଶଙ୍କର ଇଂରାଜୀ ଓ ବଙ୍ଗଳା ନାଟକର ସଂଳାପକୁ ଅନୁସରଣ କରି ଓଡ଼ିଆରେ ମଧ୍ୟ ଏ ଧରଣର ସଂଳାପ ବ୍ୟବହାର କରିଅଛନ୍ତି । 'କାଞ୍ଚିକାବେରୀ'ର ପ୍ରଥମ ଅଭିନୟର ପ୍ରଥମ ଦୃଶ୍ୟରେ ପୁରୁଷୋତ୍ତମଦେବ, ବିଦୂଷକ; ତୃତୀୟ ଦୃଶ୍ୟରେ ଦାସ, ଦ୍ୱିତୀୟ ଅଭିନୟରେ ଦାସ, ରାଜା ପୁରୁଷୋତ୍ତମ ଦେବ, ତୃତୀୟ ଅଭିନୟର ଦ୍ୱିତୀୟ ଦୃଶ୍ୟରେ କାଞ୍ଚିରାଜା, ଉତ୍କଳଦୂତ ଓ ମନ୍ତ୍ରୀ ଅମିତ୍ରାକ୍ଷର ଛନ୍ଦଧର୍ମୀ ସଂଳାପ ବ୍ୟବହାର କରିଅଛନ୍ତି । ତୃତୀୟ ଅଭିନୟରେ ଉତ୍କଳଦୂତ ମୁଖରେ ଦିଆଯାଇଥିବା ଦୀର୍ଘ ଅମିତ୍ରାକ୍ଷର ଛନ୍ଦଧର୍ମୀ ସଂଳାପ ବୀରରସ ସଞ୍ଚାର କରିଥାଏ । ପୁଣି ନାଟକରେ ଦୀର୍ଘ ଅମିତ୍ରାକ୍ଷର ଛନ୍ଦଧର୍ମୀ ସଂଳାପର ଶେଷରେ ମିତ୍ରାକ୍ଷର ବ୍ୟବହୃତ ହୋଇଥାଏ । 'କାଞ୍ଚିକାବେରୀ'ରେ ଏ ଧରଣର ସଂଳାପ ମଧ୍ୟ ଦେଖିବାକୁ ମିଳିଥାଏ । ତେବେ ଓଡ଼ିଆ ନାଟକରେ ଏ ଧରଣର ସଂଳାପର ବ୍ୟବହାର ପ୍ରଥମ ହୋଇଥିବାରୁ ଏଥିରେ ମଧ୍ୟ କେତେକ ତ୍ରୁଟି ପରିଲକ୍ଷିତ ହୋଇଥାଏ ।

'କାଞ୍ଚିକାବେରୀ'ରେ ସର୍ବମୋଟ ୧୯ଟି ସଙ୍ଗୀତ ବ୍ୟବହୃତ ହୋଇଅଛି । ଓଡ଼ିଶାରେ ପ୍ରଚଳିତ ଯାତ୍ରା ପରମ୍ପରା ସମୟରେ ଏହି ନାଟକ

ହେତୁ ହୋଇଥିବାରୁ ନାଟ୍ୟକାର ଏଥିରେ ଅଧିକ ଦୃଶ୍ୟମାନରେ ସଙ୍ଗୀତ ଦେବାକୁ ବାଧ୍ୟ ହୋଇଅଛନ୍ତି । ଏଥିରୁ କେତେକ ସଙ୍ଗୀତ ନେପଥ୍ୟରେ ଗାନ କରାଯାଇଛି । ଏହି ସଙ୍ଗୀତଗୁଡ଼ିକ ମାଧ୍ୟମରେ ନାଟ୍ୟକାର ଦର୍ଶକ-ମାନଙ୍କର ମନୋରଞ୍ଜନ କରିବା ସଙ୍ଗେ ସଙ୍ଗେ ନାଟକବର୍ଣ୍ଣିତ ବିଷୟ ସମ୍ପର୍କରେ ଦର୍ଶକମାନଙ୍କୁ ଅବହିତ କରିବାକୁ ଚେଷ୍ଟା କରିଅଛନ୍ତି । ରାମଶଙ୍କର ନାଟକରେ ସଙ୍ଗୀତ ବ୍ୟବହାର ସମ୍ପର୍କରେ ଗ୍ରନ୍ଥାବଳୀର ମୁଖବନ୍ଧରେ ଲେଖିଅଛନ୍ତି—"ରଙ୍ଗରଙ୍ଗିଣୀର ଚର୍ଚ୍ଚା ଓଡ଼ିଆରେ ନ ଥିଲା । କେବଳ ଓଡ଼ିଶୀ ରାଗ ରାଗିଣୀର ଗୀତ ରଙ୍ଗମଞ୍ଚରେ ଅନୁପଯୁକ୍ତ ବିବେଚନା କରି ମୁଁ ହିନ୍ଦୁସ୍ଥାନୀ ରଙ୍ଗରଙ୍ଗିଣୀରେ ଓଡ଼ିଆ ଗୀତ ବସାଇ କାଞ୍ଚିକାବେରୀରେ ଲୋକ ସମକ୍ଷରେ ପ୍ରଥମେ ଆଗତ କଲି ଏବଂ ତହିଁରେ ଲୋକେ ମୁଗ୍ଧ ହେବାର ଦେଖି ଅନ୍ୟାନ୍ୟ ନାଟକରେ ମଧ୍ୟ ତାହା ବସାଇଅଛି । କାଳକ୍ରମେ ହିନ୍ଦୁସ୍ଥାନୀ ରାଗ ରାଗିଣୀର ସ୍ୱର ଅନ୍ୟାନ୍ୟ କବିମାନେ ନାଟକ ଓ ଯାତ୍ରାରେ ସନ୍ନିବେଶିତ କରି ଜନମନ ମୋହୁଅଛନ୍ତି ।" 'କାଞ୍ଚିକାବେରୀ'ରେ ନାଟ୍ୟକାର ଏହି ଧରଣର ସଙ୍ଗୀତ ବ୍ୟବହାର କରି ନାଟକରେ ସଙ୍ଗୀତ ବ୍ୟବହାରର ନୂତନତା ସୃଷ୍ଟି କଲେ ।

'କାଞ୍ଚିକାବେରୀ' ଓଡ଼ିଆ ନାଟ୍ୟ ସାହିତ୍ୟର ଇତିହାସରେ ଏକ ଉଲ୍ଲେଖଯୋଗ୍ୟ ସୃଷ୍ଟି । ଘଟଣା ସଂଘର୍ଷ ମଧ୍ୟଦେଇ ନାୟକ ନାୟିକା ଓ ଅନ୍ୟାନ୍ୟ ଚରିତ୍ରମାନଙ୍କର ଚରିତ୍ର ସଂଘର୍ଷ ପ୍ରକଟିତ ହୋଇ ଏହି ନାଟକକୁ ଅପୂର୍ବ କଳା ଗୌରବ ପ୍ରଦାନ କରିଅଛି । ପଞ୍ଚସନ୍ଧି ମଧ୍ୟ ଦେଇ ନାଟକର ଘଟଣାବଳୀର ଯଥାର୍ଥ ବିକାଶ ଘଟିଛି ଓ ସେହି ଘଟଣା ପ୍ରବାହ ମଧ୍ୟ ଦେଇ ନାୟକ ନାୟିକାଙ୍କର ମାନସିକ ସଂଘର୍ଷ ଯଥାର୍ଥ ଭାବରେ ପ୍ରକଟିତ ହୋଇଅଛି । ଘଟଣା-ସଂଘର୍ଷ ଓ ମାନସିକ ସଂଘର୍ଷ ଉକ୍ତ ନାଟକରେ ଘନିଷ୍ଠ ଭାବରେ ପରସ୍ପର ସହିତ ସଂଯୁକ୍ତ ଏବଂ ଏହି ସମନ୍ୱୟଦ୍ୱାରାହିଁ 'କାଞ୍ଚି-କାବେରୀ' ଏକ ବିଶିଷ୍ଟ ସ୍ଥାନ ଅଧିକାର କରିବାକୁ କ୍ଷମ ହୋଇଅଛି । ଓଡ଼ିଆ ନାଟ୍ୟ ସାହିତ୍ୟର ଆଦିପର୍ବରେ ଏହା ଦ୍ୱିତୀୟ ନାଟକ ହୋଇଥିବାରୁ ଏଥିରେ

ବିଷୟ ସଂଯୋଜନାଗତ, ସଂଳାପ ଓ ଭାଷା ବିନ୍ୟାସଗତ ଏବଂ ଚରିତ୍ର ଚିତ୍ରଣଗତ କେତେକ ତ୍ରୁଟି ପରିଲକ୍ଷିତ ହୋଇଥାଏ । ତଥାପି ଏହି ନାଟକ ନାଟ୍ୟକାର ରାମଶଙ୍କର ରାୟଙ୍କର ନାଟ୍ୟ ପ୍ରତିଭାର ଯେ ଏକ ଅବିସ୍ମରଣୀୟ ସୃଷ୍ଟି ଏ କଥାକୁ ଆଦୌ ଅସ୍ୱୀକାର କରାଯାଇ ନ ପାରେ ।

ଅଧ୍ୟାପକ ବୈଷ୍ଣବଚରଣ ସାମଲ

ରେଭେନ୍ସା କଲେଜ, କଟକ

---

# ଉପହାର

ଅଖିଳଗୁଣନିଧାନ [illegible] ମହାଶୟ
ଶ୍ରୀଚରଣସରୋଜେଷୁ ।

ସଖେ !

ଅଦୂରଦର୍ଶୀ ଏକ ପଥିକକୁ ଯେବେ
ଛାଡ଼ିଦେବ କେହି ଯେବେ ଅପୂର୍ବ ଉଦ୍ୟାନେ—
(ଯହିଁ) ନାନାଜାତି-ସୁମ-ଶୋଭା କାନନ-ପ୍ରସାର
ଭରି ପକାଉ'ଛି ତାକୁ ସୁସଙ୍କୀର୍ଣ୍ଣ କରି,
(ପୁଣି) ବାୟୁଯାନେ ଛୁଞ୍ଚି ଦେଇ ଅପୂର୍ବ ସୌରଭ
ପ୍ରକାଶେ ମହତ୍ତ୍ୱ ଯାହା ବହୁ ଦୂରଦେଶେ,—
ଅଦୂରଦର୍ଶୀ କେହି ପଥିକକୁ ଯେବେ
ଛାଡ଼ିଦେବ ଏବମ୍ଭୂତ ସୁରମ୍ୟ ଉଦ୍ୟାନେ,
କିସ ସେ କରିବ ତାର ନ ଥିବ ଚେତନା—
ବିମୁଗ୍ଧମନକୁ କିଛି ନୋହିବ କଳନା !
ଅତି ଯତନରେ ଭ୍ରାତଃ ! ବହୁ ଶ୍ରମ କରି
ଛାଡ଼ି ଦେଇଥିଲେ ଯା'କୁ ସସ୍ନେହଭାବରେ
ଯଶାରେ ଅପୂର୍ବରୂପୀ ସାହିତ୍ୟ-କାନନେ,
ବିମୁଗ୍ଧ ପଥିକ ସାଜି ଅତି ଭୋଳମନେ
ତୋଳି ଏକ ଅଭିନବ ପୁଷ୍ପ ପୁଣି ଆଜି
କରଯୋଡ଼େ ଭକ୍ତିଭାବେ ଉତ୍ସୁକେ ଶ୍ରୀପଦେ !
ନ ଜାଣେ ସେ ସୁମମାଳ୍ୟ, ନ ଜାଣେ ସ୍ତୁତି;—
ଭୋଳମନେ ମତ୍ତ ହୋଇ ଶ୍ରୀପଦେ ଅର୍ପୁ'ଛି !
ନ ଜାଣେ କେବେହେଁ ଏହା ହେବ କି ନ ଯେନା—
ଉତ୍ସୁକେ ତଥାପି, ଯେଣୁ କରି'ଛି କଳ୍ପନା,
ଯଶାରେ ଶ୍ରୀପଦ ସବୁ, ଆନ ନାହିଁ ଜଣା !!

ଭବତ୍ସ୍ନେହାନୁଗତ
**ରାମଶଙ୍କର**

# ପରିଭାଷା

ପୁରୁଷୋତ୍ତମ କ୍ଷେତ୍ରର ଶ୍ରୀ ଜଗନ୍ନାଥ ଦେବ ଓଡ଼ିଶାର ପ୍ରଧାନ ଦେବତା । ତାହାଙ୍କର କୀର୍ତ୍ତି ଭାରତଭୂମିରେ ବିସ୍ତୃତ ଏବଂ ଇତିହାସର ଅଙ୍ଗରେ ଦେଦୀପ୍ୟମାନ ହୋଇ ରହିଅଛି; ମଧ୍ୟ ତାଙ୍କର ନାନାପ୍ରକାର ମହିମା ପୁରାଣମାନଙ୍କରେ ଲିପିବଦ୍ଧ ହୋଇ ଅବଧି ଲୋକରେ ପ୍ରଥିତ ଅଛି । ଆଜ ସେହି ଜଗନ୍ନାଥ ଦେବଙ୍କର ଗୋଟିଏ ବିଖ୍ୟାତ ମହିମା କୀର୍ତ୍ତନ କରିବା-ଭିଳାଷରେ ଲେଖକ ଏ ଅଭିନବ ପ୍ରକାର ପୁସ୍ତକ ଘେନି ଜନସମାଜରେ ଉପସ୍ଥିତ ହୋଇଅଛି; ମାତ୍ର ସେ ଜାଣେନା—ତାହାର ଚେଷ୍ଟା ସେହି ଦେବଦେବଙ୍କର ମହିମା ଉପଯୁକ୍ତରୂପରେ କୀର୍ତ୍ତନ କରିବା ପକ୍ଷରେ କେତେଦୂର ସମର୍ଥ ହୋଇଅଛି ଅଥବା ଏଭଳି ଅଭିନବ ପ୍ରକାରର ଗ୍ରନ୍ଥ ରଚନା ସାଧାରଣରେ କେତେଦୂର ଆଦୃତ ହେବ । ତେବେହେଁ ଏତକ ଉତ୍ତମ ଜଣାଅଛି ଯେ ଲୋକ ମହତ୍ତ୍ୱ ଆଶାର ବଶୀଭୂତ ହୋଇ ମୁକ୍ତାହରଣ କରିବା ଆକାଙ୍କ୍ଷାରେ ସମୁଦ୍ରରେ ବୁଡ଼ିଲେ, ସେ ତହିଁରେ କୃତାର୍ଥ ନ ହେଉ ପଛକେ, ଲୋକେ ତାହାକୁ [illegible]ରୁଛି ମନ୍ଦେ ନାହିଁ !—ଫଳତଃ ଲୋକଙ୍କର ସେହିଭଳି ଉଦାରଭାବ ପ୍ରତୀକ୍ଷା କରି ଲେଖକ ଆଶା ବାନ୍ଧିଅଛି ।

ପୁରୁଷୋତ୍ତମ ଦେବ ମସିହା ୧୪୭୯ ଠାରୁ ୧୫୦୪ ବର୍ଷ ପର୍ଯ୍ୟନ୍ତ ଓଡ଼ିଶା ସିଂହାସନରେ ଅଧିବିଷ୍ଟ ଥିଲେ । ତାହାଙ୍କ ରାଜତ୍ୱ ସମୟରେ ନାଟକଗତ ବୃତ୍ତାନ୍ତ ଘଟିଥିଲା । ପୂର୍ବେ ଓଡ଼ିଶା ରାଜାଙ୍କର ପ୍ରତାପ କେତେଦୂର ବିସ୍ତୃତ ଥିଲା, ଏ ଗ୍ରନ୍ଥ ପାଠରେ ତାହା ସୁନ୍ଦର ବୋଧଗମ୍ୟ ହେବ; କାହିଁ କର୍ଣ୍ଣାଟ ଦେଶର କାଞ୍ଚିଦୁର୍ଗ ଆଉ କାହିଁ ଓଡ଼ିଶା ! ମାତ୍ର ଆଜି ତହିଁର ଚିହ୍ନ ସୁଦ୍ଧା ଅବଶିଷ୍ଟ ନାହିଁ !

ପୂର୍ବଭୂମିକା ଅନାବଶ୍ୟକ । ଓଡ଼ିଆରେ ନାଟକ ଲେଖିବାର ଏହି ପ୍ରଥମୋଦ୍ୟମ; ସୁତରାଂ ଏହା ପ୍ରକୃତ ନାଟକ ହୋଇଥିବା ପକ୍ଷେ ଲେଖକ

କେତେଦୂର କୃତକାର୍ଯ୍ୟ ହୋଇଅଛି ତାହା କହି ନ ପାରେଁ । ତେବେହେଁ ଯେତେବେଳେ ସନ ୧୮୮୧ ମସିହା ଫିବୃୟାରୀ ମାସ ତା ୭ ରିଖରେ ଏହି ନାଟକର ପ୍ରଥମ ଥର ଅଭିନୟ ହୋଇଥିଲା, ଲୋକେ ତହିଁରେ ଆଶାତୀତ ଆନନ୍ଦ ଲାଭ କରିଥିବା ଏବଂ ସେହି ମାସର ତା ୧୨ ରିଖ ଓ ତା ୨୬ ରିଖର 'ଉତ୍କଳଦୀପିକା'ରେ ଅନୁକୂଳ ମତ ପ୍ରକାଶିତ ହୋଇଥିବାରୁ ଲେଖକ ଏହାକୁ ମୁଦ୍ରାଙ୍କିତ ଓ ପ୍ରଚାରିତ କରିବା ନିମନ୍ତେ ସାହସୀ ହୋଇଅଛି ଏବଂ ସମ୍ପୂର୍ଣ୍ଣ ଭରସା ରଖିଅଛି ଯେ ଏବେ ମଧ୍ୟ ସାଧାରଣ ସମସ୍ତେ ଏହାକୁ ସେହିପରି ଅନୁକୂଳ ଭାବରେ ଗ୍ରହଣ କରିବେ ।

ବର୍ତ୍ତମାନ ମୁଦ୍ରାଙ୍କନରେ ଏଥିର ଅନେକାଂଶ ପରିତ୍ୟକ୍ତ; ପରିବର୍ତ୍ତିତ ଓ ସଂଶୋଧିତ ହୋଇଅଛି, ବିଶେଷରେ ବାବୁ ଶ୍ରୀ ଗୌରୀଶଙ୍କର ରାୟ ଏହାକୁ ଆଦ୍ୟପ୍ରାନ୍ତ ପଢ଼ି ଯଥାବିହିତ ସଂଶୋଧନ କରି ଦେଇଅଛନ୍ତି । ବାବୁ ଶ୍ରୀ ବଳଭଦ୍ର ଦାସ ଓ ବିଶେଷରେ ବାବୁ ଶ୍ରୀ ଆଶୁତୋଷ ଦତ୍ତ ଏଥିର ଗୀତ ବିଷୟରେ ଅନେକ ସାହାଯ୍ୟ କରିଅଛନ୍ତି । ଏ ନାଟକର ଅଭିନୟ ହେବା ପକ୍ଷେ ବାବୁ ଶ୍ରୀ ଗୋପାଳଚନ୍ଦ୍ର ଦତ୍ତ ପ୍ରଥମ ହୋଇ ଉତ୍ସାହ ଓ ଉଦ୍ୟମର ବୀଜ ବପନ କରନ୍ତେ ଆମର ସମବୟସ୍କ ସମସ୍ତ ବନ୍ଧୁବର୍ଗ ସେହି ଉତ୍ସାହରେ ମାତି ଉଠିଲେ, ଏବଂ ସେହିମାନଙ୍କର ବିଶେଷ ଯତ୍ନ ଓ ପରିଶ୍ରମ ଏବଂ ଭେଦାଦାତାଙ୍କ ଅର୍ଥସାହାଯ୍ୟ ବଳରେ ଦୁଇ ଥର ଅଭିନୟ କାର୍ଯ୍ୟ ଉତ୍ତମରୂପେ ସମ୍ପନ୍ନ ହେବାଦ୍ୱାରା ଏହା ଆଦରଣୀୟ ହୋଇଥିବାରୁ ସେ ସମସ୍ତଙ୍କଠାରେ ଲେଖକ ବିନତଭାବରେ କୃତଜ୍ଞତା ପ୍ରକାଶ କରୁଅଛି ।

ଶ୍ରୀ ରାମଶଙ୍କର ରାୟ

---

# ନାଟକୋ ଲିଖିତ ବ୍ୟକ୍ତିଗଣଙ୍କର ନାମ

## ପୁରୁଷ

ପୁରୁଷୋତ୍ତମ ଦେବ ... ଉତ୍କଳର ରାଜା ।
ବିଦ୍ୟାଧର ,, ମନ୍ତ୍ରୀ ।
ନଟବର ଆଚାର୍ଯ୍ୟ ... ,, ବିଦୂଷକ ।
ଗୋଦାବରୀ ମିଶ୍ର (ତର୍କପଞ୍ଚାନନ)... ,, ରାଜଗୁରୁ ।
ରୁଦ୍ରେଶ୍ୱର ... ,, ପାଟଜ୍ୟୋତିଷ ।
ବଲ୍ଲଭ ,, ପ୍ରଧାନ ସଭାସଦ୍ ।
ବୀରବଳ ,, ସେନାପତି ।
ମେଘବର୍ଣ୍ଣ ,, ଦୂତ ।
ଦାଶରଥି ଦାସ ... ... ... ଜଗନ୍ନାଥଙ୍କ ମହାସୁଆର ।

ସୂତ୍ରଧାର; ନଟ; ସଭାସଦ୍‌ବର୍ଗ; ପଣ୍ଡା ପାଚକଗଣ; ଗୋପାଳେ; ସୈନିକ; ଦ୍ୱାରୀ; ଗାୟକ ଓ ତପସ୍ୱୀବର୍ଗ ।

କନକରେଶ୍ୱର ... ... ... କାଞ୍ଚି ରାଜା ।
ଧୀରପ୍ରଜ୍ଞ ,, ମନ୍ତ୍ରୀ ।
ବଜ୍ରନାଦ ... ,, ସେନାପତି ।

ସଭାସଦ୍‌ବର୍ଗ; ଦ୍ୱାରୀ ।

---

## ସ୍ତ୍ରୀ

ଚନ୍ଦ୍ରଲତା ... ...କାଞ୍ଚି ରାଣୀ ।
ପଦ୍ମାବତୀ ...କାଞ୍ଚି ରାଜକନ୍ୟା ।
ଶଶିକଳା, ସୂର୍ଯ୍ୟବାଳା } ...ପଦ୍ମାବତୀର ସହଚରୀଦ୍ୱୟ ।
ଭଦ୍ରା ...ମଙ୍ଗଳକାରିଣୀ ବୈଷ୍ଣବୀ ।
ସରମାଳୀ ... ...ପତଗୃହିକା ଓ ଉଦ୍ୟାନରକ୍ଷିକା
ମାଣିକା ... ... ...ଜଣେ ଗୋପାଳୁଣୀ ।

ନଟୀ; ଗୋପାଳୁଣୀ; ପରନାରୀ ।

---

# କାଞ୍ଚି କାବେରୀ

## ( ପଦ୍ମାବତୀ )

---

## ପ୍ରସ୍ତାବନା

ମମ ନବରଚନେଽପି ନାଟକେଽପ୍ୟସ୍ମିନ
ବିଦଧତ ଗୁଣଗନ୍ଧାପାଣ୍ଡିତ୍ୟଂ ସୁଧୀରାଃ—
ଜଳମପି ଜଳ ଭୌମଂ ସ୍ନାନମାତ୍ରେଣ ଶକ୍ତା
ନପିବତ ଜଳମୂର୍ଦ୍ଧ୍ୱଃ ନଃ ସୁଧୀରବରେଣ ? ॥

ନାନ୍ଦ୍ୟନ୍ତେ

ସୂତ୍ରଧାର—ଅଳମତି ବିସ୍ତରେଣ । ଆଜ ମଙ୍ଗଳାଚରଣର ଆଡ଼ମ୍ବର ଦେଖା-ଇବାର ପ୍ରୟୋଜନ ନାହିଁ । ବର୍ତ୍ତମାନ ଉପସ୍ଥିତ ସୁରଗଣଙ୍କ ସାଧୁଜନମାନଙ୍କୁ ଆମ୍ଭର ସାଦର ଅଭିବାଦନ । ଆଜି ଲୋକରେ ଯେପରି ରମଣୀୟ ସମୟ ପ୍ରାପ୍ତ ହୋଇଅଛି ତହିଁକି ନାଟକର ଅଭିନୟ ବିନା ଭଦ୍ରମଣ୍ଡଳୀର ଉପଯୁକ୍ତ ତୃପ୍ତି ହୋଇ ନ ପାରେ । ଉତ୍ତମ ଅବସର ମିଳିଛି—ଭଗବାନ୍ କରନ୍ତୁ ଅଭିନୟ ଯେପରି ନିର୍ବିଘ୍ନରେ ପରିସମାପ୍ତ ହେବ ! (ଚତୁର୍ଦ୍ଦିଗ ନିରୀକ୍ଷଣ ।)

(ନଟର ପ୍ରବେଶ)

ନଟ—(ଚତୁର୍ଦ୍ଦିଗ ନିରୀକ୍ଷଣ କରି) ବନ୍ଧୁବର ! ଏ ଅପୂର୍ବ କାଣ୍ଡ କାହିଁ ଭିଆଇଛ ? ଚତୁର୍ଦ୍ଦିଗ ତ ଶୋଭାରେ ଝଲମଲ ଦିଶୁଛି ! ନାନା-ଦେଶୀୟ ଭଦ୍ରଲୋକେ ଆନନ୍ଦମନରେ ଏକତ୍ର ସମବେତ ହୋଇ

ସଭାସ୍ଥଳ ଉଜ୍ଜ୍ୱଳ କରଅଛନ୍ତି ! ଧନୀ, ମାନୀ, ପଣ୍ଡିତ ଓ ସାଧୁଜନ-
ମାନେ ଆପଣାକୁ ଭୁଲି ଆମୋଦରେ ମନୋନିବେଶ କରି ବସି-
ଛନ୍ତି ! ସୁନ୍ଦର ଚନ୍ଦ୍ରାତପ ଦୀପମାଳାରେ ଖଚିତ ହୋଇ ଅପୂର୍ବ
ଶ୍ରୀ ଧାରଣ କରି ଦର୍ଶକ ମନ ବିମୋହିତ କରୁଛି ! ଆଜି ତୁମ୍ଭେ ମଧ୍ୟ
ଏ ରଙ୍ଗଭୂମି ଖୋଲି ବସିଅଛ – ଏଥିର ଅର୍ଥ କି ?

ସୂତ୍ର—ଆର୍ଯ୍ୟ ! ଦେଖ ତ ଆଜି କି ଏପରି ସମସ୍ତ ମିଳିବ ? ଯହିଁରେ
ଏବମ୍ଭୂତ ଉଦାର ପ୍ରକୃତିର ଲୋକମାନେ ପ୍ରକୃତ ସ୍ୱାଦୁ ଆସ୍ୱାଦନ
କରି କୃତାର୍ଥ ହୁଅନ୍ତି, ଆମ୍ଭେ ସେହି ଚିନ୍ତାରେ ଚିନ୍ତିତ ଅଛୁଁ ।
ମଧ୍ୟ ଉଦାର ମନ, ସ୍ତ୍ରୀର ପ୍ରକୃତ ଓ ରସଜ୍ଞକୁ ଭିଳ ଅଭିନୟ ବିନା
ଅନ୍ୟ କେଉଁ ନିର୍ଦ୍ଦୋଷ ଆମୋଦ ପରିତୃପ୍ତ କରିପାରେ ? ଆମ୍ଭେ
ତୁମ୍ଭଙ୍କୁ ଡାକି ଆସିଥିଲୁଁ । ସେଦିନ ଆମ୍ଭେମାନେ 'କାଞ୍ଚିକାବେରୀ'
ନାମକ ଯେଉଁ ନବପ୍ରଣୀତ ନାଟକଖଣ୍ଡ ଦେଖିଥିଲୁଁ, ଯହିଁର
ଅଭିନୟ କରିବା ନିମନ୍ତେ ତୁମ୍ଭେ ଆମ୍ଭଠାରେ ପ୍ରତିଶ୍ରୁତ ହୋଇଥିଲ
ଆଜି ସେହି ନାଟକର ଅଭିନୟ ଦେଖାଇ ଏ ଅପୂର୍ବ ସଭାସ୍ଥଳୀର
ତୃପ୍ତି ବିଧାନ କର ।

ନଟ—ବିଜ୍ଞବର ! ଆମ୍ଭେ କହିଥିଲୁଁ ସତ୍ୟ, ମାତ୍ର ତାହା ଓଡ଼ିଆରେ ପ୍ରଥମ
ନାଟକ । ଓଡ଼ିଆ ଭାଷା ଏ ପର୍ଯ୍ୟନ୍ତ ସୁଦ୍ଧା ନାଟକେ ଚିତ ରୂପେ
ମାର୍ଜିତ ହୋଇଛି କି ନା ତାହା ଜଣା ନାହିଁ । ତୁମ୍ଭେ ଏତେଶୀଘ୍ର
ସେ ନାଟକର ଅଭିନୟ ଦେଖାଇବାକୁ କିପରି ସାହସ କଲ ?

ସୂତ୍ର—ଷଡ କି ? ସେପରି ଭକ୍ତି କରିବ ନାହିଁ । ଘଷା ଖାଇଲେ ସବୁ ସଫାଇ
ହୋଇଯାଏ, ଲୁହାର ତାରରୁ ମଧ୍ୟ ସୁସ୍ୱର ବାହାରେ । ମୈ ନାଟକେ
ସଙ୍ଗରେ ଭାବର ସମ୍ପର୍କ ଅଛି, ଭାବହିଁ ତହିଁର ସାର; ଯେବେ
ଓଡ଼ିଆମାନଙ୍କର ଭାବନାଶକ୍ତି ଅଛି, ତେବେ ଭାଷା ନ ମିଳିବ
କାହିଁକି ? ମୁଁ ଦେଖିଛି 'କାଞ୍ଚିକାବେରୀ'ର ବିଷୟ ମନ୍ଦ ନୁହେ ।
ତହିଁରେ ଭାବୁକ ପାଇଁ ଯେପରି ଭାବ ନିହିତ ଅଛି, ଭକ୍ତ ପାଇଁ ମଧ୍ୟ
ସେହିପରି ଭକ୍ତି ସମ୍ମିଳିତ ଅଛି; ରସିକ ଯେପରି ରସରେ ବୁଡ଼ିପାରିବ,

ନୈତିକ ସେହିପରି ନାଟକରେ ଦେଖୁଥିବ । ତହିଁରେ ଶୃଙ୍ଗାର, ବୀର, କରୁଣ, ରୌଦ୍ର ଓ ହାସ୍ୟାଦି କେତେଗୁଡ଼ିଏ ରସର ଚର୍ଚ୍ଚା ଅଛି । ଆହୁରି ମଧ୍ୟ ତହିଁରେ ଶ୍ରୀ ଜଗନ୍ନାଥ ଦେବଙ୍କର ମହିମା କୀର୍ତ୍ତନ, ଶ୍ରୀ ଜଗନ୍ନାଥ ଓ ବଳଭଦ୍ର ଦେବଙ୍କର ପୁରୁଷୋତ୍ତମ ଦେବଙ୍କ ନିମନ୍ତେ ସ୍ୱୟଂ ଯୁଦ୍ଧଯାତ୍ରା, ପଦ୍ମାବତୀଙ୍କର କଠୋର ବ୍ରତ, ପୁରୁଷୋତ୍ତମଦେବଙ୍କର ନିଷ୍ଫଳ ପ୍ରତିଜ୍ଞା, ମନ୍ତ୍ରୀ ବିଦ୍ୟାନିଧିର ଅପୂର୍ବ ବୁଦ୍ଧିକୌଶଳ, ମାଣିକାର ଭକ୍ତି, ଦୁଷ୍ଟ ମେଘବର୍ଣ୍ଣର ଚତୁରତା, ଭଦ୍ରାର ମୋହିନୀ ଶକ୍ତି, ଦାସର ଅପୂର୍ବ ଭକ୍ତି ସୁନ୍ଦର ରୂପରେ ବର୍ଣ୍ଣିତ ହୋଇଅଛି । ପୁଣି ଏ ଦେଶ ପ୍ରତିଷ୍ଠିତ ଯେଉଁ ଜଗନ୍ନାଥ ଦେବଙ୍କର ଦର୍ଶନ ନିମନ୍ତେ ଭାରତବର୍ଷର ତାବତ୍ ଲୋକେ ପିପାସୁ ହୋଇ ଦୌଡ଼ିଛନ୍ତି, ଆଜି ତାଙ୍କର ବିଷୟ ଘେନି ଏଠାରେ ପ୍ରଥମ ଅଭିନୟ କରିବା ସୁନ୍ଦର ରୁଚିର କାର୍ଯ୍ୟ । ତୁମ୍ଭେ ଉଚିତ ଚିନ୍ତା ନ କର । ଆମ୍ଭେ ଯାହାକୁ ସମସ୍ତ ଉଦ୍ୟୋଗ କରିଦେବୁଁ, ତୁମ୍ଭେ ତତ୍ପର ହୋଇ ଅଳ୍ପମଧ୍ୟରେ ଏମାନଙ୍କର ତୁଷ୍ଟିବିଧାନ କର ।

[ପ୍ରସ୍ଥାନ]

ନଟ—(ଚତୁର୍ଦ୍ଦିଗ ନିରୀକ୍ଷଣ କରି) ସୂତ୍ରଧାର ତ ଆଜି ଉତ୍ତମ କାର୍ଯ୍ୟରେ ନିଯୁକ୍ତ କରି ଗଲେ ! କିନ୍ତୁ ଯାହାହେଉ ଆମ୍ଭମାନଙ୍କ ଘର ଝିଅ, ବ୍ୟକ୍ତି-ମାନଙ୍କର ଯଥାମାନ୍ୟ ଅଭିନୟ ଦେଖିବା ନିମନ୍ତେ ଯେ ଏତେ ଉଦାର ଲୋକେ ଏକତ୍ରିତ ହୋଇଛନ୍ତି କେବଳ ଏହିକି ସାହସ ପ୍ରଦାନ କରୁଛି । ଆଜି ଓଡ଼ିଆ ନାଟକର ପ୍ରଥମ ଅଭିନୟ;— ତହିଁରେ ଯେ ସମସ୍ତଙ୍କର ମନ ପରିତୃପ୍ତ ହେବ, ଏହା ଆଶା କରିବା ଦୁରାଶା ମାତ୍ର ! ତେଥାପି ଗୁଣଗ୍ରାହୀ ଲୋକେ ଦୋଷଭାଗ ପରିହାର କରି ଗୁଣଭାଗ ଗ୍ରହଣ କରନ୍ତି; ଅଥବା "ହଂସୋହି କ୍ଷୀରମାଦତ୍ତେ ତନ୍ମିଶ୍ରା ବର୍ଜ୍ଜୟତ୍ୟପଃ ।" ପୁଣି ଆମ୍ଭମାନଙ୍କ ପରି ସାମାନ୍ୟ ଲୋକେ ନାଟକାଭିନୟଦ୍ୱାରା ଗୁଣିଗଣଙ୍କର ତୃପ୍ତିବିଧାନ କରି କୃତାର୍ଥ ହେବା ଭୟାନକ ସମୁଦ୍ରକୁ ଭେଳାବାନ୍ଧି ପାର ହେବାପରି ଅସମ୍ଭବ

ଅହେ । ଯାହାହେଉ ପ୍ରିୟା ନ ଆସିଲେ ଆମ୍ଭେ ଏକାକୀ ଏଠାବସ୍ଥିତ ଲୋକଙ୍କ ଚିତ୍ତ ଚରିତାର୍ଥ କରିବା ପ୍ରତି ସନ୍ଦେହ ହେଉଛୁ । (ଗୀତ)

(ରାଗିଣୀ ସିନ୍ଧୁଖମ୍ବାଜ । ତାଳ କାଓ୍ୱାଲୀ ।)

କେ ଭୀଷଣସିନ୍ଧୁ ଭେଳା ଧରି ତରିବ ?
ସେ କି ଭଗ୍ନାବନ୍ଧ ଊର୍ମିଘାତେ ରହିବ ? ।
ଅକାଳେ ଯେବେ ସୁଫଳ ଫଳେ ବୃକ୍ଷପରେ,
ମଳିନ ମନେ କେ ସୁସ୍ୱାଦୁ ତାର ବୁଝିବ ? ୧ ।
ନୀଳିମ ଗଗନେ ଶୋଭେ ଚାରୁ ସୁଧାକର,
ସ୍ନିଗ୍ଧ ଶୀତଳ କରେ ହସେ ଚରାଚର,
ପ୍ରାଣପ୍ରିୟା କୁମୁଦିନୀ ଦେଖ କି ସୁନ୍ଦର,
କେବେ କହ ପଙ୍କଜିନୀ ପ୍ରେମ ତନ୍ତୁ ପାଇବ ? ୨ ।
ଏକା ବାମା-କଣ୍ଠେ ସ୍ଫୁରେ ମଧୁର ସଙ୍ଗୀତ,
ଏକା ବୀଣାସ୍ୱର ସ୍ୱରସ୍ୱରୈକ୍ୟ କରନ୍ତି ତ,
ପକ୍ଷୀକୁଳେ ପିକକଳ ମୋହେ ଜନଚିତ୍ତ,
ନ ବଜାଇ ଦୁନ୍ଦୁଭି କେ ଦେବ ମନ ତୋଷିବ ? ୩ ।

(କର୍ଣ୍ଣ ଡେରି) ଏ କା'ର ସ୍ୱର ? ପ୍ରିୟାଙ୍କର ?

[ଗୀତ ଗାଇ ଗାଇ ନଟୀର ପ୍ରବେଶ]

(ରାଗିଣୀ ଖମ୍ବାଜ । ତାଳ ଏକତାଳୀ ।)

ପ୍ରେମ କାରାଗାରେ, କି ସୁଖ ସଂସାରେ ?
ଛଦ୍ମ ଭୁଜଙ୍ଗମ ଦଂଶିବ ରେ ମନ,
ସୁଖ ଶାନ୍ତି ହେବ ଭ୍ରମ ମର୍ମବ୍ୟଥାରେ !!
ବୃଥା ଆଡ଼ମ୍ବର ଲୋକେ କରେ ହରବର,
ଫଳେ ଏକା ସ୍ୱର୍ଗସୁଖ ନରକଠାରେ । ୧ ।

ନଟୀ—ଆର୍ଯ୍ୟପୁତ୍ର ! କି ଚିନ୍ତା କରୁଛ ?

ନଟ—କିଛୁ ନାହିଁ । ଏହିକ୍ଷଣି ତୁମକୁ ସୁମରୁଥିଲି, ତୁମ୍ଭେ ବି ଦୈବବଳକୁ ଆସିଗଲ ।

ନଟୀ—ଏପରି କି ଆବଶ୍ୟକୀୟ କାର୍ଯ୍ୟ ?

ନଟ—ଯେପରି ଆବଶ୍ୟକୀୟ ସେହିପରି ଦୁରୂହ । ସୂତ୍ରଧାର ମୋତେ ନିଯୁକ୍ତ କରି ଆପେ ଗୋଟିଏ ନାଟକ ଅଭିନୟ କରିବା ଅଭିପ୍ରାୟରେ ବଡ଼ ଉଦ୍‌ଯୋଗ ଲଗାଇଛନ୍ତି । ଆଜ ଉକ୍ତ ଥିଏଟରରେ ନାଟକ ଅଭିନୟ ହେବ ।

ନଟୀ—ତେବେ କି ସେହି 'କାଞ୍ଚୀକାବେରୀ' ନାଟକର ଅଭିନୟ କରିବ ?

ନଟ—ହଁ ।

ନଟୀ—କର, ସୁନ୍ଦର ହେବ ।

ନଟ—ମାତ୍ର ତୁମ୍ଭେ ସାହାଯ୍ୟ ନ କଲେ ମୁଁ ଏକାକୀ ଏଡ଼େ ବଡ଼ କାର୍ଯ୍ୟ ସାଧନ କରିବାକୁ ସମର୍ଥ ହେବି କି ?

ନଟୀ—ଆର୍ଯ୍ୟପୁତ୍ର ! ଯହିଁରେ ତୁମ୍ଭର ଆନନ୍ଦ ଓ ଏ ସ୍ୱର୍ଗୋପମ ସଭାଗତ ସଭ୍ୟଙ୍କର ଆନନ୍ଦ ଜନ୍ମିବ, ଅବଳାର ତହିଁରେ ଲେଶମାତ୍ର ଆପତ୍ତି ନାହିଁ ।

ନଟ—ତେବେ ଆସ କି—(ଗୀତ)

(ରାଗିଣୀ ବାହାର ବସନ୍ତ ; ତାଳ ତେତାଳୀ ।)

ଦୟା କର ପ୍ରଭୁ ଏ ଦୀନ ଜନେ ।
ମୋହବୁଁ ରସିକ ମନ ମନ୍ଦମା କୀର୍ତ୍ତନେ ॥
ଅନାଦି ଅନନ୍ତ ନାଥ, ନୀଳାଚଳେ ରୂପ ଖ୍ୟାତ,
ଅକଳିତ ଦାରୁମୂର୍ତ୍ତି ଅମୃତ ମନ୍ଥନେ । ୧ ।
ଦୀନବନ୍ଧୁ ଦୀନତୋଷ, ଙ୍କଣ୍ଠି ଦ୍ୟନ୍ତୁ ଏହି ବେଶ
କମ୍ପିବ ଏ ସଭାସ୍ଥଳ ହରି ହରି ସ୍ୱନେ । ୨ ।

ନଟୀ—(ସହାସ୍ୟ) ଆର୍ଯ୍ୟପୁତ୍ର ! ଆସ ଆସ, ଏଣେ ସୂତ୍ରଧାର କି ଯୋଗାଣ ଯୋଗାଡ଼ୁଛନ୍ତି ?

[ଉଭୟେ ନିଷ୍କ୍ରାନ୍ତ ଓ ଯବନିକା ପତନ ।]

# ପ୍ରଥମ ଅଭିନୟ

## ( ପୁଷ୍ପ )

---

### ପ୍ରଥମ ଦୃଶ୍ୟ — ସଭାଗୃହ ।

[ରାଜା ପୁରୁଷୋତ୍ତମଦେବ, ମନ୍ତ୍ରୀ ବିଦ୍ୟାନିଧି, ପାରିଷଦ୍‌ବର୍ଗ ଓ
ବିଦୂଷକ ଆସୀନ ।]

ରାଜା— ମନ୍ତ୍ରୀବର ଧୀରପ୍ରଜ୍ଞ ! ଆଜ କେତେଦିନେ
ପ୍ରବେଶ ହୋଇବ କି ହୋ ଚତୁର୍ମାସ୍ୟାକାଳ ?—
ଭୀଷଣ ଅଶନି ନାଦ, ବିଜୁଳି ଚମକ
କମ୍ପାଉଛି ଧରାଧାମ; ନିର୍ଘାତ ଉତ୍ଥିତ
ପବନେ ପବନେ ସଦା କେବେ ଘୂର୍ଣ୍ଣିବାୟୁ
ଝଟରେ ଏ ଚରାଚରେ କାଠି କୁଟା ଘେନି
ଦେଖାଏ ସୁନ୍ଦର ଦୃଶ୍ୟ; ପଲ୍ଲୀର ସୁନ୍ଦରୀ
କୋମଳ ଶ୍ୟାମଳରୂପେ ହୋଇ ବିରାଜିତା,
ଋତୁଗତ ଶୀତଳତା ହେତୁ ଶ୍ୟାମବସ୍ତ୍ର
ଘୋଡ଼ି ହୋଇଅଛି କି ବା !— ଆକାଶ-ବିତାନେ
ନବୀନ ନୀରଦ-ମାଳା; ଅବନୀ କାମିନୀ
ଜ୍ୱଳି ଜ୍ୱଳି କେତେଦିନ ତପନ-ତାପରେ
ଅବଗାହ୍ୟ ବୃଷ୍ଟି-ଜଳେ ବିଶୁପିତା ପାଣେ
ପ୍ରକାଶୁଛି କୃତଜ୍ଞତା—କେମନ ଶୀତଳ !
ଜଳ ଯାହା ଗଡ଼ିଯାଏ ଉପରେ ତାହାର
ନୁହେ ବୃଷ୍ଟି ଜଳ, ତାହା ଆନନ୍ଦାଶ୍ରୁ-ଧାର !
ମୟୂର ମୟୂରୀଙ୍କର ଷଡ଼ଜ ସମ୍ଭାଷା

ଚତୁର୍ମାସ୍ୟା ପ୍ରବେଶ କାଞ୍ଚୀ ନାହିଁ ଭବେ ?
ଦ୍ଧୃଷ୍ଟକ ଯେସନ ଆମ୍ଭେ ଅନାଇ ବସିଛୁଁ ;—
ହେବ ଆଉ କେତେଦିନେ ?

ମନ୍ତ୍ରୀ—(କରଯୋଡ଼ି) ଅବଧାନ ପ୍ରଭୋ,
ନ ଜାଣେ ଶ୍ରୀ ଛାମୁ କମ୍ପା ଉକ୍ତିଣ୍ଠିତ ଏତେ ?

ବନ୍ଧୁ—ଆହା ! ମନ୍ତ୍ରୀପଣକୁ ପଞ୍ଚାନ୍ତର ! ଏତେ ସାମାନ୍ୟ କଥାଟା ବୁଝିବାକୁ ଅକ୍ଷମ ଆଉ ରାଜ୍ୟ-ଶାସନରୂପ ଦୂରୂହ କାର୍ଯ୍ୟରେ ବୁଦ୍ଧି ଚଳାବ କପରି ? ଅସ୍ମମାନଙ୍କ ପରି କ ଆଉ ବୁଦ୍ଧିର ତୀକ୍ଷ୍ଣତା !—ହାଃ ହାଃ ହାଃ ମହାରାଜ ତ ପଦ୍ମାବତୀ ରୂପରେ ମୋହିତ; କୌଣସି ପ୍ରକାରେ ଥରେ କାଞ୍ଚୀକାବେରୀ ଆଡ଼କୁ ଯାଇପାରିଲେ ହେଲା । ଏତେଦିନ ଯେ ତାଙ୍କ କପାଳ ଉଦ ହୋଇଥିଲା, ଏହିଟା ମୋତେ ଆଶ୍ଚର୍ଯ୍ୟ ବୋଧ ହେଉଛି !—ହଁ ଅବିବାହିତ କ ନା ।

ରାଜା—ଆଶ୍ଚର୍ଯ୍ୟ ! ଏତେବେଳେ ଆଉ ଏପରି ବାକ୍ୟ-ପ୍ରୟୋଗର ଆବଶ୍ୟକତା ନାହିଁ ।

ମନ୍ତ୍ରୀ—ମହାରାଜ ! ଛାମୁ କ ଚତନ୍ତ'ଥଙ୍କର ସେହି ପ୍ରତିଜ୍ଞାର ଉଲ୍ଲେଖ କରୁଛନ୍ତି ? କନ୍ତୁ ମହାରାଜ ! ଛାମୁ କ ପଦ୍ମାବତୀଙ୍କୁ ଭଲପାଆନ୍ତି ନାହିଁ ?

ବନ୍ଧୁ—ଏକଥା ମହାରାଜାଙ୍କୁ ପଚାରୁଛ କାହିଁକି ?—ଆମକୁ ପଚାର । (ଖଣ୍ଡିଏ ଚିତ୍ରପଟ ବାହାର କରି) ଦେଖିଲ ଏ କାହାର ଚିତ୍ର । (ଚିତ୍ର-ପଟ ପ୍ରଦାନ ।)

ମନ୍ତ୍ରୀ—(ଚିତ୍ରପଟ ଗ୍ରହଣ କରି କେତେକ୍ଷଣ ଦେଖି ସବିନୟ) ସତେ ଏ କାହାର ଚିତ୍ର ?—ପଦ୍ମାବତୀଙ୍କର ?

ବନ୍ଧୁ—ପଦ୍ମାବତୀଙ୍କର ।

ସୁକୁମାରୀ ସ୍ୱର୍ଣ୍ଣଲତା ପଦ୍ମାବତୀ ଧନୀ
ଚିତ୍ରିତା ଏ ଚିତ୍ରପଟେ; ରୂପୁ ବସୁଧାଧରା !

ଗଢ଼ିଛୁ ବିଧାତା ଯେଉଁ ବସିଣ ନିଶ୍ଚଳେ
ଚନ୍ଦ୍ରଙ୍କ ଜ୍ୟୋତ୍ସ୍ନାରେ; ଯେଉଁଥି ହାସ୍ୟର ପ୍ରତିମା
ସ୍ୱତଃ ପ୍ରକାଶିତା; କେଡ଼େ କମନୀୟ ରୂପ !
ଦେଖିଛୁ ଚକ୍ଷୁରେ, ଯେବେ ସ୍ନିଗ୍ଧ ଧ୍ୱନିରେ,
କେତି କେତି ସ୍ୱରେ ଯେଉଁ କୋଟଣି ଜପୋତ
ମନର ଆନନ୍ଦେ; ଯେଉଁଥେ ତରଳି ପଡ଼ୁଛୁ
କୋମଳ ଲବଣୀସର ! ଶ୍ରୀମୁଖ-ପଙ୍କଜ
ବିକଶିତ ମରେ କିବା ଲାବଣ୍ୟ-ଜଳରେ !—
ରୂପର ଲାବଣ୍ୟ ସ୍ୱଚ୍ଛ ସୁନିର୍ମଳ ବାରି !
ତ୍ରିଭବ ଦୁର୍ଲଭ ରୂପ ପଦ୍ମାବତୀଙ୍କର
ଖଣ୍ଡିବାକୁ ଦେବଗର୍ବ ବିଧାତା କୌଶଳ ।

(ସମସ୍ତଙ୍କର ଉଚ୍ଚହାସ୍ୟ ।)

ରାଜା—କେ ବୋଲଇ ମୂର୍ଖ ଯେତେ ବିଦୂଷକ ଭବେ ?

ବିଦୂ—କି ହେଲା ନାହିଁ ? ତୁମ୍ଭଙ୍କ ମନ୍ତ୍ରୀଙ୍କଠାରୁ ମୁଁ ବିଶେଷ ବିଦ୍ୱାନ ବୋଲି ପରୀକ୍ଷିତ ହେଲେ ତ ହେଲା ! ଧନ୍ୟ ମୋତେ—ହାଃ ହାଃ ! ମନ୍ତ୍ରିନ୍ ! ଦେଖିଲ ତ ମହାରାଜାଙ୍କର ମନକୁ କେମନ୍ତ ଆସିଲା ?

ମନ୍ତ୍ରୀ—ମହାରାଜ ! ତୁମ୍ଭେ କି ପଦ୍ମାବତୀଙ୍କି ଦେଖିପାରନ୍ତେ ନାହିଁ ?—ତୁମ୍ଭଙ୍କର ପ୍ରତିଜ୍ଞା ତ ବଡ଼ ସ୍ଥିର ଦେଖୁଛୁଁ ।

ରାଜା—ମନ୍ତ୍ରିନ ! ଏପରି ପ୍ରଶ୍ନ କରିବାର ଅର୍ଥ କି ? ପଦ୍ମାବତୀଙ୍କୁ ଆମ୍ଭେ ଦେଖିପାରୁଁ ନା ତ ଦେଖିପାରୁଁ କାହାକୁ ? କିନ୍ତୁ ସେ ଦିନ ଗଲାଣି । ସେ ଦୁରାଶା ମନରୁ ଏକାବେଳକେ ଦୂର କରି ଦେଇଛୁ । ଏବେ ଆଶ୍ଚର୍ଯ୍ୟେ ଯେଉଁ ତାପସ ବାହାର କରିଛନ୍ତି ତାହାକୁ ନକ୍ରେ ଆଙ୍କୁଁ—ଗତ ବର୍ଷ ରଥଯାତ୍ରା ବେଳେ ଯେଉଁଦିନ ପଦ୍ମାବତୀଙ୍କି ଏଠାରେ ପ୍ରଥମେ ଦେଖିଥିଲୁଁ ସେହିଦିନ ଏକାନ୍ତରେ ବସି ଆଙ୍କୁଥିଲୁଁ ଆଶ୍ଚର୍ଯ୍ୟେ ଆସି ପଛରୁ ଦେଖା ଦେଲେ—

ବଦୁ — ଦେଖ ମନ୍ତ୍ରିନ୍, ଏହା କି ପ୍ରେମର ଚିହ୍ନ ନୁହେଁ ?

ରାଜା — ଆମ୍ଭର ହୃଦୟର ହୃଦୟ ଏବେ ମଧ୍ୟ ପଦ୍ମାବତୀ ପାଇଁ ଝୁରୁଛି । କିନ୍ତୁ ଯେଉଁଦିନ କାଞ୍ଚୀର ରାଜା ଆମ୍ଭଙ୍କୁ ଚଣ୍ଡାଳ ବୋଲି କହିଛି ଆମ୍ଭେ ସେହିଦିନୁଁ ପଦ୍ମାବତୀଙ୍କ ଦୂରକୁ ନିକ୍ଷେପ କରିଛୁଁ । କି ? କାଞ୍ଚୀର ରାଜା କି ଜାଣେ ନା ଆମ୍ଭେ ଯାହାର ସେବା କରୁଁ ସେ ସମସ୍ତ ଜଗତର କର୍ତ୍ତା, ସମସ୍ତ ଲୋକଙ୍କର ପିତା—ସେ ମନେକଲେ କ୍ଷଣକ ମଧ୍ୟରେ କାଞ୍ଚୀକାବେରୀକି କାହିଁ ଉଡ଼ାଇ ଦେଇପାରେ । ତାହାର କି ଏତିକି ଜ୍ଞାନ ନୋହିଲା ଯେ ଯେଉଁ ଦେବତାର ଦର୍ଶନ ନିମନ୍ତେ ସମଗ୍ର ଭାରତବର୍ଷର ଯେ କେତେ ଲୋକେ ଅହରହ ଏ ସ୍ଥାନକୁ ଆସି ଏହି ନୀଳକନ୍ଦରକୁ ସ୍ୱର୍ଗପରି କରି ରଖିଛନ୍ତି, ଏଠାକୁ ଆସି ଦେବଦର୍ଶନ ନିମନ୍ତେ ନିତ୍ୟ ମହାକୋଳାହଳ ଲଗାଇଛନ୍ତି ସେ ମନେକଲେ ଏହିକ୍ଷଣି ତା'କୁ ଉଡ଼ାଇ ଦେଇପାରେ, ତା'କୁ ଅଧଃପାତରେ ବିନଷ୍ଟ କରିପାରେ ? ଯାହାର ଅସୀମ ମାୟାବଳରେ ସିଂହଦ୍ୱାରକୁ ସମୁଦ୍ର ନିକଟ ହେଲେ ମଧ୍ୟ ତାହାର ବଜ୍ରନାଦ ଶୁଭଇ ନାହିଁ ଆମେ ସେହି ପ୍ରଭୁର ସେବା କରିବା କାଳରେ ଆମ୍ଭଙ୍କୁ ଚଣ୍ଡାଳ ବୋଲି କହିଲା ? ନରାଧମ, ଥରେ ଦେଖିବା ଦେଖି ତୋହର ଅଣ୍ଟା କେତେ ବଳୀୟାନ୍ । ଦ୍ୱାର—

ନେପଥ୍ୟେ — ରାଜନ୍ ।

[ଦ୍ୱାରୀ ପ୍ରବେଶ ଓ କରଯୋଡ଼େ ଦଣ୍ଡାୟମାନ]

ରାଜା — ବୀରବଳ ସେନାପତିଙ୍କି ଆଜ୍ଞା ଦିଅ ।

ଦ୍ୱାରୀ — ଯେ ଆଜ୍ଞା ମହିମା । [ପ୍ରସ୍ଥାନ]

ବଦୁ — ମହାରାଜାଙ୍କର ବିଶେଷ କ୍ରୋଧ ହୋଇଛି ।

ରାଜା — ଆଶ୍ଚର୍ଯ୍ୟ ! ତୁମ୍ଭେ ବୁଝିଛ—ଏ କି ସାମାନ୍ୟ କଥା ?

ବଦୁ — ମହାରାଜ ! ଆମ୍ଭେମାନେ କି ତାହା ବୁଝିନାହୁଁ ? ଯେଉଁ ଲୋକ ରାଜପଦରେ ପ୍ରତିଷ୍ଠିତ, ପୁଣି କିଏ ନା ଜଗନ୍ନାଥଙ୍କର ସେବକ,

ଯାହାଙ୍କ ଏକା ବାଳଅ ହେଉଁ ସମସ୍ତ ରାଜମାନେ ପ୍ରଭୁ କରି ମାନନ୍ତି, ତାଙ୍କୁ ଚଣ୍ଡାଳ ବୋଲିବା କି ମାହାଲିଆ ପଡ଼ୁଛି ?

ମନ୍ତ୍ରୀ—କାଞ୍ଚୀରାଜା ନିତାନ୍ତ ଲଘୁପଦାର୍ଥ । ସେ ଜଣେ ପ୍ରଧାନ ରାଜା ତା କେହି ଅସ୍ୱୀକାର କରିବ ନାହିଁ, ମାତ୍ର ତେବେହେଁ ଏଡ଼େ ଉଦ୍ଧତ ହେବା ଭଲ ନୁହେ,—ଉଦ୍ଧତ ବୋଲି ପୁଣି ଜଗତ୍ପିତା ଜଗନ୍ନାଥଙ୍କୁ ରୁଚ୍ଛ କରି ଗଜପତିଙ୍କି ଗାଳି ଦେଇଗଲେ ! ପଦ୍ମାବତୀ ସଙ୍ଗରେ ଛାମୁଙ୍କୁ ଦେଖିବାକୁ ଆସି ଏହାବେଳକେ ଚଣ୍ଡାଳ ବୋଲି ଗାଳି ଦେବା ନିତାନ୍ତ ଅନ୍ୟାୟ । ଦେବାଧିଦେବଙ୍କ ରଥବଧି ନିମନ୍ତେ ଛେରାପହଁରା କରିବା ଯେବେ ଗର୍ହିତ କାର୍ଯ୍ୟ ହୋଇଥିଲା, ତେବେ ତ ଝିଅ ଦେଇ ନ ଥିଲେ ଯଥେଷ୍ଟ ହୋଇଥାନ୍ତା—ଦେବତାଙ୍କୁ ରୁଚ୍ଛ କରି ସିଂହାସନୋପବିଷ୍ଟ ଲୋକମାନଙ୍କୁ ଏ ଭଳି କଥା ବୋଲିବା ନିତାନ୍ତ ଅନର୍ଥର ମୂଳ ଏବଂ ଜାଚତାର ଚହ୍ନ । ନଡ଼ିଆ ଗଛ ଯେ ଏଡ଼େ ଉଚ୍ଚ, ସେ ମଧ୍ୟ ସାମାନ୍ୟ ଗଛ ବାଡ଼ ଦେଖିଲେ କରେଇ ହୋଇଯାଏ; ନାହିଁ, ବୁଦ୍ଧି ନାହିଁ ।

ବଲ୍ଲଭ—ମନ୍ତ୍ରୀବର ! ଏତ ସେହି ଗତ ରଥଯାତ୍ରାର ପନ୍ଦର ଦିନ ଆଗେ ହେବା ବେଳର କଥା । ଜଗନ୍ନାଥେ କ କହିଥିଲେ ?

ମନ୍ତ୍ରୀ—କହିଥିଲେ ଚତୁର୍ଦ୍ଦଶୀ ହେଲେ ସେ କାଞ୍ଚୀକାବେରୀ ଜୟ କରାଇ ଦେବେ ।

ବଲ୍ଲଭ—ହଁ ହଁ, ଯେଉଁଦିନ ଦାସ ବନ୍ଧରୁ ମୁକ୍ତ ହେଲେ ସେହିଦିନ ମହାରାଜଙ୍କୁ ଏ ସ୍ୱପ୍ନାଜ୍ଞ ହୋଇଥିଲା,—ଚତୁର୍ଦ୍ଦଶୀ ତ ହେଲାଣି । ଦାସ ମହାପ୍ରଭୁଙ୍କୁ କହିଲେ ବୋଧହୁଏ ସେ ଦେବଙ୍କୁ ପ୍ରାର୍ଥନା କରିବାଦ୍ୱାରା ଗୋଟାଏ କିଛି ନିଶ୍ଚୟ ହୋଇଯାନ୍ତା । ଦାସଙ୍କୁ ସେ ଗୋଟାଏ ବଡ଼ କଥା ନୁହେ ।

ମନ୍ତ୍ରୀ—ତାହା ନୁହେ, ତେବେ ଦେଖାଯାଉ, ଜଗନ୍ନାଥ ନିଜେ ଯାହା
କହୁଛନ୍ତି ତାହା ତ ମିଛ ହେବନାହିଁ । ଦୋହଲବେଳକୁ ତାହା
ଜଣାଯିବ ମାତ୍ର ବୋଧହୁଏ ଆଜି ଦୁଇ ପ୍ରହର ଦିନର କଥା ।

[ ବୀରବଳର ପ୍ରବେଶ ଓ ପ୍ରଣିପାତପୂର୍ବକ କରଯୋଡ଼େ ଦଣ୍ଡାୟମାନ । ]

ରାଜା—କହୁଦନ ତବେ ପ୍ରଭୁଙ୍କର ଯେ ଆଜ୍ଞା ହୋଇଥିଲା ତାହା ସ୍ମରଣ
ଅଛି ତ ?

ବୀର—ଆଜ୍ଞା ମଣିମା !

ରାଜା—ତେବେ ତୁମ୍ଭେ ସୈନ୍ୟମାନଙ୍କୁ ସଜ୍ଜିତ ହୋଇ ରହିବା ନିମନ୍ତେ
ଆଦେଶ କରଥାଅ । ଆଜ୍ଞା ପାଇବା ମାତ୍ରକେ, ଦେଖ, ଯେପର
କୌଣସି ସାମାନ୍ୟ କାରଣ ସକାଶେ ବିଳମ୍ବ ନ ହୁଏ ।

ବୀର—ଯେ ଆଜ୍ଞା । [ ପ୍ରସ୍ଥାନ ]

ରାଜା—ମନ୍ତ୍ରିନ୍ ! ଆମ୍ଭର ମନ ଅଧୈର୍ଯ୍ୟ ହୋଇଛି । ଆଜି ଯେପରି
ଅଳ୍ପକ୍ଷଣରେ ଏକଘଣ୍ଟା ମଧ୍ୟରେ ମହାପ୍ରଭୁଙ୍କର ଚନରଥଯାନ
ଗୁଣ୍ଡିଚାଘରୁ ଆସି ସିଂହଦ୍ୱାରରେ ବିଜେ କଲେ ଆଜି ଦେବେ ଯେପର
ନିର୍ବିଘ୍ନରେ ସିଂହାସନରେ ଉପବେଶନ କଲେ ଏଥିରୁ ଅନୁମାନ
ହେଉଛି ଦେବେ ଅଧୀନ ପ୍ରତି ନିତାନ୍ତ ପ୍ରତିକୂଳ ନୁହନ୍ତି—ଏଥିର
ଅବଶ୍ୟ କିଛି ଗୂଢ଼ ମର୍ମ ଅଛି—ଦାସ ମହାପୁଆରଙ୍କର ମଧ୍ୟ ଏହିପରି
ଅଭିମତ । ଦେଖାଯାଉ, ବର୍ତ୍ତମାନ ସଭା ଭଙ୍ଗ କର ।

ପଟକ୍ଷେପଣ ।

---

ଦ୍ୱିତୀୟ ଦୃଶ୍ୟ—ଗୋଟିଏ ଗଳିମଧ୍ୟସ୍ଥ ଦୋଳମଣ୍ଡପ ।

[ ଗୋବର୍ଦ୍ଧନ, ମାର୍କଣ୍ଡ, ଲୋକନାଥ ଓ ଜନାର୍ଦ୍ଦନ ଶ୍ରୀଚରଣ ପଣ୍ଡାଏ ଅସୀନ । ]

ଗୋବ—ଯାହା ହେଉ ଦାସ ଏକା ଆମ ଭିତରେ ବଡ଼ କପାଳିଆ ।

ମାର୍କ—କହେଃ ଯାଙ୍କୁ ରଜା ସନ୍ଧରେ ମାନ୍ୟ କରନ୍ତି ତାଠଉଁ ବଳି ଆଉ କପାଳିଆ ଅଛୁ ?

ଗୋବ—ଆରେ ରଜା କଅଣ—ନଜେ ପ୍ରଭୁ ତ ତା ସଙ୍ଗେ କଥାବାର୍ତ୍ତା କରନ୍ତି ।

ମାର୍କ—ଭଲ ଦେଖ ତ, ଦେବତା ଭିତରେ ବଡ଼, ମଣିଷ ଭିତରେ ବଡ଼, ସମସ୍ତେ ଦାସର ଗୌରବ କରୁଚନ୍ତି—କେଡ଼େ କପାଳ ! ତୁମ ଆମ ଦେହୁ କେହୁ ଏଡ଼େ ବଡ଼ ହବ ?

ଲୋକ—ହିଁ—ମ, ଆଜ କପାଳ ଖୋଲିତ ପୁଣି କାଲିକ ଲୁଆଡ଼େ ଉଡ଼ିଯିବ । ବଡ଼ ହେଲ କେମିତେ ? ଯେ ବନ୍ଦୀ ହେଲ ସେ ପୁଣି କ ବଡ଼ ? ମୋ କଥା ମୁଁ କହୁଛୁ ମୋତେ ପାଁଆସ ଟଙ୍କା ଦେଇ ସେମିତେ ବଡ଼ଲୋକ ହବାକୁ କହିଲେ ତ ମୁଁ ହେବ ନାହିଁ । କାହିଁ ? ତୁମେ ଅରେ ବନ୍ଦୀଘରେ ପଡ଼ କେଡ଼େ ହୋଇଯିବ—ନୋହିଲେ ଦାସର ପୁଣି ଯଉଣଂଧା !

ମାର୍କ—ମ' ଏ ଅଚ୍ଛାକଥା—ବନ୍ଦୀ ଘରେ ପଡ଼ିଲା ବୋଲି କ'ଣ ଜାଧ ଗଲ ? ଏମିତେ କେତେ ବନ୍ଦୀ ହୁଇ ନାହାନ୍ତି କ—ଦାସ ପରି ହବା ପଗ୍ ସହଜ କଥା ହୋଇଛୁ ?

ଚନା—(ଭୁଙ୍ଗ ଘୋଟୁ ଘୋଟୁ) ଆଣ ଠେଙ୍ଗା ବେକଭଙ୍ଗା—ମୁଁ ନାରଦ ହୋଇ ନଖ ଘଷୁଛୁ !

ଗୋବ—ଆରେ ମାର୍କଣ୍ଡ, ଭଲ ବୁଝ ତ ସେ ଯେ ବନ୍ଦୀଘରେ ପଡ଼ିଥିଲ କାର କଣ ତହିଁରେ ଦୋଷ ଥିଲ ? ରଜା ଏବେ ବୁଝିପାରବେ ନାହିଁ ତ ତାଙ୍କୁ କାର ବଳ ? ଲୋକନାଥର କଥା ଭଲ ପଗ୍ରୁଛ, ଖାଲି ପରର ନିନ୍ଦା କରୁଥିବ ।

ଲୋକ—କେମନ୍ତ, ମୋର ପରର ନିନ୍ଦା କରିବା ବୃଦ୍ଧି ହେଲ ଆଉ ତେମେ ବଡ଼ ଭଲ ଲୋକ ? ଦାସର ଦୋଷ ନ ଥିଲ ? ସେ କମଳାଟା

ନେଇ ଅଡ଼େ ବଡ଼ଠାକୁରଙ୍କ କଡ଼ରେ, ଅଡ଼େ ସାନଠାକୁରଙ୍କ କଡ଼ରେ, ଅରେ ଏଣେ, ଅରେ ତେଣେ, ଏମନ୍ତ କାହିଁକି କରୁଥିଲ ? ଠାକୁରଙ୍କ ସଙ୍ଗରେ ରହସ୍ୟ କଲ ଖେଳିବ ନା କଣ ? ତାର ଦୋଷ ନାହିଁ ? ରଜା କଣ ପାଗଳ ହୋଇଥିଲେ ନା ତାଙ୍କୁ ଭୂତ ଲଗିଥିଲ ?

ଗୋବ—ଦେଖୁଛୁ, ଦେଖୁଛୁ ମାର୍କଣ୍ଡ । ଅରେ ସେ ଯେ କମଳାଝାଁ ଘେନ ଏଣେ ତେଣେ କରୁଥିଲ ତାର କିଛୁ କଥା ବୁଝିଛୁ ?

ଲୋକ—କଣ, କଥା କଣ ?

ଗୋବ—କଥା ନାହିଁ ?—ସେ ଛକର ଗଲ୍ପ କାହିଁକି ?

ଲୋକ—କାହିଁକି ଛକର ଗଲ୍ପ ? ରଜା ବନ୍ଦୀ କରିଥିଲେ ପୁଣି ଏବେ ମୁକୁଲାଇ ଦେଲେ ।

ଗୋବ—ରଜା ବନ୍ଦୀ କରିଥିଲେ ପୁଣି ମୁକୁଲାଇ ଦେଲେ । ଦେଖୁଛୁ ମାର୍କଣ୍ଡ କଥା ନ ବୁଝି ନ ସୁଝି ଯେ ଗୋଟାଏ ଲୋକକୁ ଛଡ଼େଇ ଦିଏ ମୋର ତାକୁ ଦେଖିଲେ ହାଡ଼ ଜଳିଯାଏ ।

ଲୋକ—ହାଃ ! ଭଗତ ଲୋକ, ସ୍ୱାଙ୍କର ପୁଣି ହାଡ଼ ଜଳିଯାଏ ।

ଗୋବ—କେମନ୍ତ—ନାହିଁ ତେମେ ବଡ଼ ଭଗ ଲୋକ ?

ଜନା—ଲଗୁ ଲଗୁ, ମୁଁ କଥ ବଜାଉଛୁ ଯେ । ହଳଆ ବାହ୍ମୁଣଙ୍କର ପାଞ୍ଚଣ ନାହିଁ—କଅଣ ହେଇ ଯାଉନ୍ତାଣି ! ଲଗୁ, ମୁଁ ନାରଦ ବସିଛୁ ଯେ ।—ନାରଦର୍ଷି, କଡ଼ରେ ବସି, ହକେଇ ହସି, ମରଇ ଚୁଷି ।

ମର୍କ—ଯା ଭାଇ କାହିଁକି ଆପଣା ଭିତରେ ଏମନ୍ତେ ଲଢ଼େଇଛ ? ସେଇଟା ସାଙ୍ଗରେ କଣ କଥା ?

ଲୋକ—ଉଃ ତୁମେ ତୁନ ହୁଅ, ତୁମକୁ କଏ ପାଟି ଫିଟେଇବାକୁ କହୁଛୁ । ଆମର ନନାଏ ଆସିଲେ !—ହୁଁ କାହିଁକି ଛଡଉଲେ କହିଲ ?

ଗୋବ—ମୁଁ ଜାଣେ ନାହିଁ ହୋ, ତୁମ ମନକୁ ଯା ଆସେ କରୁଥାଅ ।

[ନାସଦାନ ହସ୍ତେ ସଦାଶିବ ପଣ୍ଡାର ପ୍ରବେଶ ।]

ସଦା—କି ହୋ ସ୍ୱେ କଣ ? ସତେ ତ ଯା, କହନ୍ତି ବ୍ରାହ୍ମଣଙ୍କର ସ୍ୱଭାବ । କୁକୁର ଘୁରଟା ମିଳିଲେ ଯେମିତି ବ୍ରାହ୍ମଣ ଘୁରଟା ମିଳିଲେ ସେମିତି ! କାହିଁକି କଜିଆ ଲଗେଇଛ ? (ନସ୍ୟ ଗ୍ରହଣ ଓ ଛୁଙ୍କାର ଶବ୍ଦ ।)

ମାର୍କ—ନେଇ ଜାଣି ହୋ ଦେଖିବ ତୁଚ୍ଛବୁଟି, କିଛି କଥା ନାହିଁ ।

ସଦା—କଥା ନାହିଁତ କଜିଆ ଲଗିଲା କେମିତି ? ଅବଶ୍ୟ କିଛି କଥା ଥିବ ।

ଲୋକ—ଏଇ ଗୋବର୍ଦ୍ଧନ ଯେତେବେଳେ ନାହିଁ ତେତେବେଳେ ସବୁଙ୍କ ସଙ୍ଗରେ କଜିଆ ଲଗେଇଥାଏ ।

ଗୋବ—ଦେଖ ମାର୍କଣ୍ଡ, ମୋରତ ଦୋଷ । ମୁଁ କଜିଆରୋଇ ଆଉ ନୋକେଇ ପଣ୍ଡାଏ ଆମର ଗୁଣମଣି ।

ସଦା—ଗୋବର୍ଦ୍ଧନ ଆଉ ଚଳୁନ୍ତ କାହିଁକି ? କଥାଟା କଣ ?

ଗୋବ—ସ୍ୱଭାବ କଣ କାହାରି ଛାଡ଼ି ଯାଏ । ଲୋକନାଥ ନନ୍ଦନ ଦାସ ପରି ଛୋଟଲୋକ ବ୍ରହ୍ମାଣ୍ଡରେ ନାହିଁ । ଯେ ବଡ଼ୀ ହେଲ ସେ ପୁଣି କି ବଡ଼ ? ମୁଁ ଆଉ ମାର୍କଣ୍ଡ ବସି ବସି ଦାସର ଟିକିଏ ଗୁଣ କହୁଥିଲୁ କ୍ଷଣି ଯେମିତି କାମୁଡ଼ା କୁକୁରଟା,—ସେମିତି ଦାସ ଧୂର ଗର୍ଜନା କଲା ।

ସଦା—ହଁ ଏଥିରେ ଲୋକନାଥର କାଇଲି ।

ଲୋକ—କଣ ? ମୋର କେମିତି କାଇଲି ହେଲା ? ସବୁଜ ବୁଦ୍ଧି ପକେଇଲେ—ବସ୍ତ୍ରପଟ ନା ଅଛି ।

ଜନା—ହିଁ ଅନ୍ଧୁଳ ଲାଗୁ—ନାହୁଲେଇ, ପୀଡ଼ା ଫାଟୁ, ତେବେ ସେ ବ୍ରାହ୍ମଣ ଠିଁ ନ ହଉ !

ସଦା—ସ୍ୱେ କଣ, ମୋ ଉପରେ ଏତେ ଖୋଡ଼ କାହିଁକି ? ଦାସ କିଛି ମୋତେ ଶଏ ଷାଠିଏ ଗଣି ଦେବ, ନା ତୁମ୍ଭେ ମୋତେ କିଛି ଶଏ ଷାଠିଏ ଗଣି ଦେବ ?

ମାର୍କ—ନାହିଁତ ।

ସଦା — ଭଲ ମାର୍କଣ୍ଡ, ବୁଝିଲ, ଦେଖ ମୋର କଣ କରିବ, ନା ଦାସ ମୋର କଣ କରିବ । ଯାହା ହଉଛି, ଯାହା ହେବାକୁ ଅଛି ତାହା ହେବା ନା ?

ମାର୍କଣ୍ଡ ଓ ଲୋକ — ହଁ ଆଉ କଣ !

ସଦା — ଦାସ ଯେ ବନ୍ଦୀ ହେଲ ତା ରଜା ବୁଝିପାରି ନ ଥିଲେ । ହଡ଼ସର କପାଳ ପଡ଼ିଥିଲା, ସେ କଣ କରିବ ! ମାଣିକ ମୁକୁଳ ଗଲା କେମନ୍ତେ ? ଲୋକନାଥ କଣ ସବୁ ଜାଣେ ନା !

ଲୋକ — କଣ, ଲୋକନାଥ କଣ ସବୁ ଜାଣେ ନା ?

ସଦା — ତୁମ୍ଭେ ଜାଣ, ଯେତେବେଳେ ରାଜନ ଘର ଗହରେ ଦାସ ଜଗନ୍ନାଥେ ରଖ ବୋଲି ବାରବାର ଡାକିଲା, ସେତେବେଳେ ଜଗନ୍ନାଥେ ରଜାଙ୍କୁ କଣ ସ୍ୱପ୍ନେଇଲେ ?

ଲୋକ — କଣ, ସ୍ୱପ୍ନେଇଲେ କଣ ?

ସଦା — ହଇ, ନ ଜାଣି କରି କଜିଆ ଲଗେଇ ଥାଅ କେମିତି ? ତାଙ୍କୁ କହିଲେ ନାହିଁ 'ହେ ରଜା, ତୁ ମନେ ମନେ ଠାକୁର ହେଇ ବସିଛୁ । ତୋ ଜାଣିବାରେ ତୋତେ ବଳି ଆଉ ଠାକୁର ନାହିଁ । କାଲି ଉପହାର ବେଳେ ପୁରୁଷ ଥିଲୁ ଆଜି ମୋ ଆଗରେ ଠାକୁର ହେଇ ତୋର ଏତେ ଗର୍ବ ? ଆଜକାଲ ହେଉଛି ହେଲ ମୋର ମଣୋହି ହୋଇନାହିଁ, ତୁ ମୋର ଭକ୍ତକୁ କେଉଁଠି ରଖିଛୁ ଏହିକ୍ଷଣି କାଢ଼ିଦେ ।' ଦେଖିଲ ଜଗନ୍ନାଥେ ସବୁ ଜଣେ ତାକୁ ଭକ୍ତ ବୋଲି କହିଲେ ।

ଲୋକ — ହଁ ଭଲ ସେ ଭକ୍ତ ହେଲାତ ହେଲା, ତାର ଗର୍ବ ପୁଣି କେତେ ? ଯେତେବେଳେ ଭମଲାଟାଏ ଘେନି ଏଣେତେଣେ କରୁଥିଲା, ସେତେବେଳେ ଜଣେ ତୁମର ଦାସକୁ ସଜା ନ କହି ଠାକୁର ଡାକୁଛନ୍ତି ବୋଲି କହିବାରୁ ତୁମର ଦାସ କହିଲେ କଣ ନା 'ମୁଁ ତ ଗୋଟାଏ ଠାକୁରକୁ ଜାଣେ ଆଉ ପୁଣି ଠାକୁର କିଏ ?' ରଜା କଣ ତା ଲେଖାରେ ତୁଚ୍ଛପଦାର୍ଥ ?

ସଦା—ତୁମେ ତ ବୁଝିନାହଁ, ଖାଲି କଥା ଗୁଡ଼ାଏ କ'ଣ କାହିଁକି ? ସେହି
ପ୍ରଭୁ ପୁଣି କହିଲେ ନାହିଁ, ଦାସର କିଛି ଦୋଷ ନାହିଁ, ସେ କଣ
କରିବ ? ପାଟଲି କମଲାଟିଏ ଯେବେ ଆମ ପତ୍ରିକା ଅସିଲାବେଳେ
ଆମେ ମନା କରି କହିଲୁଁ ବଡ଼ ଠାକୁରଙ୍କ ପତ୍ରରେ ଦିଅ ଆଉ
ତାଙ୍କ କଥାକୁ ଦେଲାବେଳେ ସେ କହିଲେ ତାଙ୍କ ପତ୍ରରେ ଦିଅ ।
ଏଇଥିପାଇଁ ବଡରାସ ଲଣ୍ଡ ଭଣ୍ଡ ହୋଇ ବୁଲୁଥିଲା । ଆମର ସ୍ୱବନାରେ
ଖେଳହୋଇ କେତେ ଠାକୁର ଅଛନ୍ତି ବୋଲି କହିଲା । ଏବେ ତାକୁ
ଛାଡ଼ି ଦେ ।

ଲୋକ—ତୁମେ ଯେତେ କହ; ସ୍ୱା କିଏ ମାନିବ ?

ସଦା—ମ ଯେ ମାନିବ ନାହିଁ ତାକୁ ମନେଇବ କିଏ ?

ମାର୍କ—ସେଇଠୁଁ ରଜା କଣ କଲେ ?

ସଦା—ରଜା କଣ କରିବେ ? ଦ.ସକୁ ଛାଡ଼ି ଦେଲେ, କହିଲେ ଆଗରୁ ସ୍ୱା
ମୋତେ କହିଥିଲେ ଏତେ ଦଶା କାହିଁକି ଲଭି ଥାନ୍ତି ? ଠାକୁରେ
କହିଲେ ବୋଲି ସିନା ଆମେ ଜାଣିଲୁଁ ।

ମାର୍କ—ଏ ସବୁ ସ୍ନାହାନ ପୁରେନଇର କଥା ?

ସଦା—ହଁ ସେ ଜ୍ୟୋତ୍ସ୍ନାପୁରେନଇର ଦ'ପହର ଧୂପର କଥା ନୁହେଁ କି ?
ଆଜି ହେଲା ଦଶମୀ—ସେ ଦିନ ପଚାଶଠାର ତ କଥା ।

ମାର୍କ—ସେ ପଚାଶଟା ଦିନର କଥା ନୋକେଇର କଣ ମନେ ନାହିଁ ? ମୋ
ଉପରେ ଗଲା ଶଆଁ ପରିତ ହେଇଗଲା ।

ଜନା—ଓଃ ! ଭଲ ଦାସର କଥା ଆଣି ପକେଇଲେ । ସେ ବାହୁଡ଼ା ଦଶମୀ
ଦପହରଟା ଯାକ କଟର କଟର ଖରି କାନ ପଗ୍ରଣ କରିଦେଲେଣି ।
ମରିଚପାଣି ଖାଇବ କି ନାହିଁ କହିଲା । ବେଳ ଉତ୍ତର ହେଇ
ଯାଉଚ— ଦାସ ଆମର ଭଲ ହେଲେ କେତେ, ମନ୍ଦ ହେଲେ
କେତେ, ମଲେ କେତେ, ଗଲେ କେତେ—ଏକା ମରିଚପାଣି

ଈଶାରେ କେମନ୍ତ ହଳାରେ ଗଣ୍ଡା ଦାସଙ୍କୁ ବୁଆଡ଼େ ଛଡ଼େଇ ଦେବ ! — ଜାଗାକୁ ଯିବ ତ ଚାଲ ହେ । (ଉତ୍ଥାନ)

ଅନ୍ୟସମସ୍ତେ—ହଁ ଚାଲ (ଦଣ୍ଡାୟମାନ ଓ ଗମନୋଦ୍ୟତ)

ଲୋକ—ମୁଁ ଭାଇ କାଲି ପର ପଚଳା ମଣ୍ଡିତପାଣି ହେଲେ ଖାଇବ ନାହିଁ ।

ଜନା—ନନାଏ ଆମର ଚାଲ ଆଗେ—ଗୋବର ପାଣି ଗୁଣ୍ଡାଏ ଖୁଆଇଦେବ ଆଜ୍ଞା ।

ପଟକ୍ଷେପଣ ।

---

## ତୃତୀୟ ଦୃଶ୍ୟ—ଶୟନାଗାର

[ ପୁରୁଷୋତ୍ତମ ଦେବ ପଲଙ୍କୋପରି ଶୟନ । ହଠାତ୍ 'ମହାରାଜ' ଶବ୍ଦ ସହ ନେପଥ୍ୟ ଘଣ୍ଟା-ଧ୍ୱନି ଓ ରାଜାଙ୍କର ସ୍ୱପ୍ନାବିଷ୍ଟ ବୋଇ ଗାଉଥାନ । ]

ରାଜା—ଏଁ କ !—

[ଦ୍ୱାରୀର ପ୍ରବେଶ ।

ଦ୍ୱାରୀ—(କରଯୋଡ଼େ) ମହାରାଜ ! ମହାପ୍ରଭୁଙ୍କର ଆଜ୍ଞା ହେଉଛୁ ।

ରାଜା—କଣ ? ମହାପ୍ରଭୁଙ୍କର ଆଜ୍ଞା ? କିଏ ସମ୍ବାଦ ଦେଲା ?

ଦ୍ୱାରୀ—ଆଜ୍ଞା ଦାସ ମହାସୁଆରେ ଦ୍ୱାରେ ଦଣ୍ଡାୟମାନ । ମହାରାଜଙ୍କର ସାକ୍ଷାତ୍ ଅଭିଳାଷ କରୁଛନ୍ତି ।

ରାଜା—ଦାସ ସୁଆରେ ଦ୍ୱାରେ କାହିଁକି ? ତାଙ୍କୁ ଭିତରକୁ ଘେନ ଆସ ।

ଦ୍ୱାରୀ—ଯେ ଆଜ୍ଞା ମହିମା ! [ପ୍ରସ୍ଥାନ ।

ରାଜା—(ସ୍ୱଗତ) ଏତେ ରାତରେ ମହାସୁଆରେ ଉରତର ହୋଇ ମହାପ୍ରଭୁଙ୍କର କି ଆଜ୍ଞା ଘେନି ଆସିଛନ୍ତି ?—ଦେଖାଯାଉ ।।

[ ଦାସର ପ୍ରବେଶ ।

ଦାସ—ମହାରାଜଙ୍କର ଜୟ ହେଉ !

ରାଜା—କି ଦାସ, ଆସ ଆସ ।

ଦାସ—ମହାରାଜ ! ମୋର ଦୋଷ କ୍ଷମା କରିବେ । ଛାମୁଙ୍କୁ ଏତେ ରାତିରେ ଉଠାଇବାରେ ବୋଧହୁଏ ଶ୍ରୀଅଙ୍ଗକୁ ବାଧିଥିବ ।

ରାଜା—ନା, ବାଧିବାର କାରଣ କିଛି ନାହିଁ । ଏବେ ମହାପ୍ରଭୁଙ୍କର ଆଜ୍ଞା କିସ ?

ଦାସ—ମହାରାଜ ! ପ୍ରଭୁଙ୍କର ଆଜ୍ଞା ହୋଇଛି ଛାମୁ ସେହିକ୍ଷଣି କାଞ୍ଚୀକାବେରୀ ଅଡ଼କୁ ଯାତ୍ରା କରନ୍ତୁ ।

ରାଜା—କି, କାଞ୍ଚୀକାବେରୀ ଅଡ଼କୁ ଯାତ୍ରା କରିବା ? ପ୍ରଭୁଙ୍କର ଏତେଦିନେ ଏ ଅଙ୍ଗରା ମନେ ପଡ଼ିଲା ? ଦାସ, ଆମ୍ଭେ ତୁମ୍ଭଙ୍କୁ ପଣ୍ଡାଙ୍କର ଭକ୍ତ ବୋଲି ବିଶେଷ ମାନ୍ୟ କରୁଁ ଆଉ ତୁମ୍ଭପ୍ରତି ଆମର ସମ୍ପୂର୍ଣ୍ଣ ବିଶ୍ୱାସ । ତୁମ୍ଭ ମୁହଁରୁ ଯେ କେବେ ଅଳୀକ କଥା ବାହାରିବ ଏହା ଆମ୍ଭେ ସ୍ୱପ୍ନରେ ହିଁ ଭାବି ନାହୁଁ; ମାତ୍ର ଗୋଟିଏ କଥା ଅଛି, ଲୋକଙ୍କର ମୁଖରେ ଯେତେଶୀଘ୍ର ବିଶ୍ୱାସ ଜନ୍ମେ ସ୍ୱପ୍ନରେ ସେତେ ହୁଏ ନାହିଁ ।

ଦାସ—ମହିମା, ବୁଝିପାରିଲି; ମାତ୍ର ମହାରାଜ ! ଛାମୁରୁ ଅଧୀନକୁ ଯେଉଁ ମର୍ଯ୍ୟାଦାରେ ରଖିବା ହୋଇ'ଛନ୍ତି ତହିଁରେ ଯେ ଅଧୀନ ଛାମୁରେ ମିଛ କହିବ ଏହା ନିତାନ୍ତ ଅସମ୍ଭବ—ପରେ ଅଧୀନର ଆଚରଣ ଛାମୁରେ ଉତ୍ତମରୂପେ ଜଣା ଅଛି ।

ରାଜା—ଆଉ ଅଧିକ କହିବାର ପ୍ରୟୋଜନ ନାହିଁ । ଏବେ କି ଏହିକ୍ଷଣି ଯାତ୍ରା କରିବାକୁ ହେବ ?

ଦାସ—ଏହିକ୍ଷଣି, ଏ ରାତ୍ର ଶେଷ ହୋଇଗଲା । ସ୍ୱପ୍ନାଦେଶ ହେଲା ମାତ୍ରକେ ଆମେ ଦଉଡ଼ିଲୁଁ—ମହାପ୍ରଭୁଙ୍କର ଆଜ୍ଞା ଏହାବେଳକେ ପ୍ରସ୍ତୁତ ହୁଅନ୍ତୁ ।

ରାଜା—ଓଃ ! ଆଉ ତ ରାତ ଘଡ଼ି ଦୁଇ ଅବଶିଷ୍ଟ ଅଛି ! ଦ୍ୱାରୀ—

ନେପଥ୍ୟ—ମହାରାଜ ! [ଦ୍ୱାରୀର ପ୍ରବେଶ

ରାଜା—ମନ୍ତ୍ରିଙ୍କି ଆଜ୍ଞା ଦିଅ ଓ ସେହିପରି ସେନାପତି. ବଲ୍ଲଭ, ବିଦୂଷକ ଓ ଗୁରୁଦେବଙ୍କୁ ମଧ୍ୟ ସଙ୍ଗେ ସଙ୍ଗେ ଘେନି ଆସ ।

ଦ୍ୱାରୀ—ମଣିମା ! [ପ୍ରସ୍ଥାନ

ରାଜା—ଦାସ ! ଆଜିକି ଅନେକ ଦିନ ହେଲା ଦେବଙ୍କର ଆଜ୍ଞା ନୋହୁଥିବାରୁ ମନରେ ପ୍ରକୃତ ଉତ୍କଣ୍ଠା ଜାତ ହୋଇଥିଲା, ଏବେ ଆଉ କିଛି ଚିନ୍ତା ନାହିଁ, ଯାହାହେଉ । ଆମ୍ଭେ ତ ଏହିକ୍ଷଣି ଯାତ୍ରା କରିବା; କିନ୍ତୁ ତୁମ୍ଭଙ୍କୁ ମଧ୍ୟ ଯିବାକୁ ହେବ ।

ଦାସ—ଆଜ୍ଞା ମୁଁ ଯାଇ କଣ କରିବି ?

ରଣମଦେ ମତ୍ତ ହୋଇ ନାଚିବେ କ୍ଷତ୍ରିୟେ,
ଶୁଣାନେ ପିଶାଚ ଯେସନ୍ତି ରକତ-ପିପାସୁ,
ଘୋରରବେ ରଣବାଦ୍ୟ ବାଜିବ ନସ୍ୱଇ—
ଭୀଷଣ ସଙ୍ଗୀତ ଯେବେ ଜୀବନ-ଅନ୍ତକ;
ସେହି ବାଦ୍ୟେ ହେଳ ହୋଇ ରଥୀ ଓ ସାରଥି,
ହସ୍ତ୍ୟାରୋହୀ; ହସ୍ତିପକ, ସେନାନୀ ଓ ସେନା,
ଅଶ୍ୱାରୋହୀ, ପଦାତିକ, ଏକଙ୍କୁ ଆରେକ
ଚିହ୍ନି ପାରୁ ନ ଥିବେ ସେ ଏକ କାର୍ଯ୍ୟେ ମାତ୍ର
ଆପଣାକୁ ବୀର ମଣି ସମର-ଭୂମିରେ ।
ସୁଦର୍ପ ପ୍ରକାଶି ବୀରେ ନାଚୁଥିବେ ରଙ୍ଗେ;
ଚଳୁଥିବ ଗୁଳି, ଗୋଳା, ବାଣ, ଖଡ଼ଗ. ଅସି;—
ଦରିଦ୍ର ବ୍ରାହ୍ମଣ ତହିଁ ଯାଇ କି କରିବ ?
କ୍ଷତ୍ରେ କରିବେ ରଣ, ଯାଉନ୍ତୁ ସେମାନେ,—
ଶୋଭିବ ତାହାଙ୍କ ଯିବା; ଜିଣିବେ ସଗ୍ରାମେ;
କାମ୍ବୁଜର ଛାରଖାର କରି ସେ ଆସିବେ;

ଉଡ଼ାଇବେ ଜୟଧ୍ୱଜା—ବାଜଯିବ ଭେରୀ
"ଉତ୍କଳୀୟ ଜୟ—ଜୟ ଗଜପତିଙ୍କର";
ଆଣିଦେବେ ପଦ୍ମାବତୀ ମରାଳଗମନା
ଶ୍ରୀ ଚରଣେ ପୁଣି;—ପାଳାଇବେ ଦୃଢ଼ବ୍ରତ !—
ଦୁର୍ବଳ ବ୍ରାହ୍ମଣ କେଉଁ କାର୍ଯ୍ୟ ହେବ ତହିଁ ?

ରାଜା—ତା ଯଥାର୍ଥ; ମାତ୍ର ତୁମ୍ଭେ ବୁଝିପାରୁ ନାହଁ, ଆମ୍ଭେ ଏହି କାର୍ଯ୍ୟରେ ଏକା ପ୍ରଭୁଙ୍କ ଉପରେ ସମ୍ପୂର୍ଣ୍ଣ ନିର୍ଭର କରିଛୁଁ; ତାଙ୍କର ବଚନ ମତେ ଆମ୍ଭେ ଚଳୁଛୁଁ । ଯେବେ ତୁମ୍ଭେ ନ ଯିବ ତେବେ ଆମ୍ଭେ ପ୍ରଭୁଙ୍କର ଉପଦେଶମାନ କାହାଦ୍ୱାରା ପ୍ରାପ୍ତ ହେବୁଁ ?

ଦାସ—ତେବେ କଣ ଅଧୀନଙ୍କୁ ନିତାନ୍ତ ଯିବାକୁ ହବ ? ହେଉ; ତେବେ ଯିବି । ବର୍ତ୍ତମାନ ମୁଁ ଘରକୁ ବିଦାୟ ହେଉଛି—ଯିବାର ଉଦ୍‌ଯୋଗ କରିବି ।

ରାଜା—ତେବେ ଆସ । ଶୀଘ୍ର ତତ୍ପର ହୁଅ ।

ଦାସ—ମହାରାଜଙ୍କର ଜୟ ହେଉ ! [ ପ୍ରସ୍ଥାନ

ରାଜା—କାହିଁ ମନ୍ତ୍ରୀ ଏମାନେ ଏତେବେଳଯାଏ କାହିଁକି ଆସିଲେ ନାହିଁ, ଦ୍ୱାରୀ ତ କେତେବେଳୁଁ ଗଲଣି । ରାତ୍ର ଯେ କ୍ରମେ ଶେଷ ହେବାକୁ ବସିଲାଣି, ଆଉ କେତେକାଳ ଅପେକ୍ଷା କରିବାକୁ ହେବ ?—ସେ କାହାର ପଦଶବ୍ଦ ?—ସମସ୍ତେ ଆସିଲେ ପରା ?—

[ ମନ୍ତ୍ରୀ, ବିଦୂଷକ, ବୀରବଳ, ରାଜଗୁରୁ ଓ ବଲ୍ଲଭର ପ୍ରବେଶ । ]
କି, ସମସ୍ତେ ଏକାବେଳକେ ? ଆସ ।

ବିଦୂ, ରାଜଗୁରୁ ଓ ବଲ୍ଲଭ—ମହାରାଜଙ୍କର ଜୟ ହେଉ ! (ଉପବେଶନ । )

ବୀର—ପ୍ରଣିପାତ ଓ ଉପବେଶନ ।)

ମନ୍ତ୍ରୀ—(ପ୍ରଣିପାତ ଓ ଉପବେଶନାନ୍ତେ) ମହାରାଜ ! ଆମ୍ଭମାନଙ୍କୁ ଏତେ-ବେଳେ ଆଜ୍ଞା ହେବାର ପ୍ରୟୋଜନ କି ?

ରାଜା—ବର୍ତ୍ତମାନ ଜଗନ୍ନାଥଦେବଙ୍କର ଆଜ୍ଞା ହୋଇଛୁ ଏହିକ୍ଷଣି, ଏ ରାତ୍ର ଶେଷ ନୋହୁଣୁ, କାଞ୍ଚୀକାବେରୀ ଆକ୍ରମି ଯାତ୍ରା କରିବାକୁ ହେବ ।

ମନ୍ତ୍ରୀ—ଦ୍ୱାରୀ ମଧ୍ୟ ସେହି କଥା କହୁଥିଲା । ଆଉ କୌଣସି ବିଷୟର ଚିନ୍ତା ନାହିଁ—ଆମ୍ଭମାନଙ୍କର ସମସ୍ତ ଆରମ୍ଭ ପ୍ରସ୍ତୁତ ହୋଇ ରହିଛି । ତେବେ ଆଉ ବିଳମ୍ବର ପ୍ରୟୋଜନ କି ? ସେନାପତି ଯାଇ ସୈନ୍ୟମାନଙ୍କୁ ଅବିଳମ୍ବେ ସଜ୍ଜିତ କରାଇ ଏହିକ୍ଷଣି ବିଜୟ-ଘୋଷଣା କରି ଦେଉନ୍ତୁ ?

ରାଜା—ସେହି କଥା । ସେନାପତେ ! ତୁମ୍ଭେ ସୈନ୍ୟମାନଙ୍କୁ ମୁହୂର୍ତ୍ତକ ମଧ୍ୟରେ ସଜ୍ଜିତ କରାଇ ଜଗନ୍ନାଥଦେବଙ୍କର ଏ ଆଦେଶ ଶୁଣାଇ କହିଦେବ ଯେ 'ଶରୀରଂ ବା ପାତୟେତ୍ କାର୍ଯ୍ୟଂ ବା ସାଧୟେତ୍' । ତୁମ୍ଭେ ଶୀଘ୍ର ସେନା ସଜ୍ଜିତ କରି ଆସି ସମ୍ବାଦ ଦେଲେ ଆମ୍ଭେ ଯାତ୍ରା କରିବା, ତୁମ୍ଭଙ୍କୁ କେବଳ ଅପେକ୍ଷା ।

ସୀଥ—ମହାରାଜ ! ସେ ବିଷୟରେ ଚିନ୍ତା କରିବେ ନାହିଁ । କାଞ୍ଚୀରାଜାଙ୍କୁ ଆମ୍ଭେମାନେ ସହଜରେ ପରାସ୍ତ କରିପାରିବୁ । ତାଙ୍କର ସେନା ଅଧିକ, ମାତ୍ର ଆମ୍ଭମାନଙ୍କଠାରୁ ଯୁଦ୍ଧବିଦ୍ୟାରେ ହୀନ । ଛାମୁରୁ ଯାତ୍ରିକ ଉଦ୍ୟୋଗ ହେଉ, ସେନାଏ ଏହି ବାହାରିଲା ପରି ।

[ ପ୍ରସ୍ଥାନ

ରାଜା—ମନ୍ତ୍ରିନ୍ ! ତେବେ ଏହି କେତେକ ଦିନ ନିମନ୍ତେ ତୁମ୍ଭ ହସ୍ତରେ ରାଜ୍ୟଭାର ନ୍ୟସ୍ତ ହେଲା; ବଲ୍ଲଭ, ଦେଖ ଯେପରି କୌଣସି କାର୍ଯ୍ୟରେ ବିଶୃଙ୍ଖଳା ନ ଘଟେ; ଆମ୍ଭେ ସମ୍ପୂର୍ଣ୍ଣ ଭରସା ରଖିବୁଁ ଫେରି ଆସି ଦେଖିବୁଁ ଯେ ପ୍ରଜାଏ ଶାନ୍ତ ଓ ସୁଖଭୋଗ କରୁଥିବେ ।

ବଟୁ—( ସ୍ୱଗତ ) ଓଃ ! ଯାର ମନରେ ସୁଖ ନାହିଁ ସେ ଏ ସବୁ କଥା ଆଉ କେତେ ଶୁଣିବ ? ତୁଚ୍ଛ କଥାରେ ବିଦାବଦ ସରିକି ହେଇଗଲାଣି — ଗରିବ ବ୍ରାହ୍ମଣଙ୍କ କଥା କି କାହାର ମନେ ପଡ଼ିବ ? ରାତରୁ ସେ ଦହଡ଼ିଚ, ବ୍ରାହ୍ମଣୀ ତେଣେ ଅନେଇ ବସିଥିବ—ମହାରାଜ

ଡକେଇଛନ୍ତି, ନ ଜାଣି କଣ ମିଳିବ ! ଆଜି ବ୍ରାହ୍ମଣ ହୋଇଥିଲେ ପରା ଫଳାହାର ଗୋଟାକର ହେଲେ ଏତେବେଳକୁ ଉଦ୍ୟୋଗ ହୋଇସାରି ଥାନ୍ତାଣି ।

ରଜା—ଆର୍ଯ୍ୟେ ! ତୁମକୁ ଅନ୍ୟମନସ୍କ କାହିଁକି ଦେଖାଯାଉଛି ? କି ବିଷୟ ଘେନି ବ୍ୟସ୍ତ ?

ବିଦୂ—( ସ୍ୱଗତ ) କହିବା ନାହିଁ କାହିଁକି — ପେଟର କଥା ଲୁଚେଇଲେ କି ହେବ ? (ପ୍ରକାଶ୍ୟ) ଛାମୁ ଏ ବ୍ରାହ୍ମଣଙ୍କ କଥା ଜାଣନ୍ତି ନାହିଁ ଯେ ଭୋକରେ ଭୋକରେ ମରିଗଲେଣି ପରା । ଆଜିକି କେତେଦିନ ହେଲା ଗୋଟାଏ ମୁଠା ଭୋଜନ ହୋଇ ନାହିଁ । ଛାମୁ ଯେ ଏତେ ରାତିରୁ ଡକେଇ ଥିଲେ, ମନେ କରିଥିଲି ଗୋଟାଏ ବୃହତ୍ ଆୟୋଜନ କରୁଥିବ ପରା ! ନା ଛାମୁଙ୍କ ସ୍ତ୍ରୀଙ୍କୁ ଯାଞ୍ଚା କରି ବସିଲେଣି । ଯାହାହେଉ ମନଟା ଛାମୁଙ୍କ ସଙ୍ଗେ ମିତାପଣ ହଉଥିଲା ।

ରଜା—ତୁମଦେହ ସେଠି କି କାର୍ଯ୍ୟ ହେବ ?

ବିଦୂ—ଛାମୁରୁ ଏହା କହିକି ପର୍ବଣବା ମହୋତ୍ସବ—ସ୍ତ୍ରୀଙ୍କରେ ଜସ୍ତ ଲାଭ ହେଲେ ଯଉଁଦିନ ଭୋଜନ ହବ ସେଦିନ ଖାଇବ କିଏ ?—ହୋଃ ହୋଃ ।

ମନ୍ତ୍ରୀ—କେଡ଼େ ଲୋଭୀ ! କାହାର କଉଁ କଥା ପଡ଼ୁଛି, ଆର୍ଯ୍ୟଙ୍କର କେବଳ ପେଟର ଧନ୍ଦା ।

ବିଦୂ—ନୋହିଲେ କି, ମନ୍ତ୍ରୀ ପରା ! ଏଣିକି ବୁଝୁନାହଁ, ମୁଁ ନ ଗଲେ ମହାରାଜ ମନ ଫିଟାଇବେ କାହିଁକି ? ଆଜି ଶାସ୍ତ୍ର ଶୁଣେଇବ କିଏ ? ଆଉ ଛାମୁଙ୍କ ମନ ବୁଝିବ କିଏ ? ଜଣେ ଚତୁର ମଣିଷ ନ ହେଲେ ହବ କେମିତି ?

ଛିନ୍ନା ଭିନ୍ନା ଭବେତ୍ ପୃଥ୍ୱୀ ଖଣ୍ଡଂ ସ୍ୱର୍ଣ୍ଣାକୃତଂ ଯଥା ।
ରାଜ୍ଞଃ ସୁବୁଦ୍ଧିହୀନା ସ୍ୟାତ୍ ତଥା ବିଦୂଷକଂ ବିନା ! !

ମନ୍ତ୍ରୀ—ଧନ୍ୟ ଧନ୍ୟ ! ତୁମର ଅଲୌକିକ ବୁଦ୍ଧି !

ବଟୁ—ମୋତେ ପରା ମହାରାଜ ବାହନ ପଦ ଦେଇଥିଲେ 'ବଦ୍ୟା-ଦିଗ୍ଗଜ !'
—ହାଃ ହାଃ ! ଏବେ ମହାରାଜ ! ତୁମରୁ ଏ ବ୍ରାହ୍ମଣ ପ୍ରତି କ
ଦୃଷ୍ଟି ଦେଲ ?

ରାଜା—ଚାଲ । ତୁମଠିଁ ସବୁ କଥା ।

ବଟୁ—ଆଉ ? ଆଜ୍ଞା ମୁଁ ତେବେ ବ୍ରାହ୍ମଣୀଠିଁ ବଦାୟ ନେଇ ଆସେ ।

ମନ୍ତ୍ରୀ- ହଁ ଶୀଘ୍ର ନେଇ ଆସ ।

ବଟୁ—ଆହା ! ନାନନ୍ତ ଥୋବଡ଼ା ହେଉଗଲଣି । ଶୀଘ୍ର କୁହେ,
ବ-ଦା-ୟ ।—

[ ପ୍ରସ୍ଥାନ ଓ ବ୍ୟସ୍ତଭାବେ ରୁଦ୍ରେଶ୍ୱର
ପାଟଜ୍ୟୋତିଷର ପ୍ରବେଶ ।

ରୁଦ୍ର—ମହାରାଜାଙ୍କର ଜୟହେଉ !

ରାଜା—କ ପାଟଜ୍ୟୋତିଷେ, ଆସନ୍ତୁ—ଏତେ ବ୍ୟସ୍ତ କାହିଁକ ?

ରୁଦ୍ର—ମହାରାଜ ! ତୁମ୍ଭେ ବର୍ତ୍ତମାନ କାଞ୍ଚୀକାବେରୀ ଅଭିମୁଖେ ଯାତ୍ରା କରୁଛନ୍ତି
ଶୁଣିଲି, ମାତ୍ର ତୁମ୍ଭର ତ ବର୍ତ୍ତମାନ ଯାତ୍ରା ପଡୁନାହିଁ ।

ରାଜା—ଯାତ୍ରା ପଡୁନାହିଁ ? ତେବେ ପ୍ରଭୁଙ୍କର ଆଜ୍ଞା ହେଲା କପରି ?

ରୁଦ୍ର—ମହାରାଜ ! ଦେଖିବା ହେଉନ୍ତୁ—
ରବଶୁକ୍ରେ ଭବେତ୍ ମୃତ୍ୟୁଂ ଶନିସୋମେ ଚ ପଶ୍ଚିମେ ।
ବୃହଜ୍ଜୀବେ ନୈଋତସ୍ୟା ଶନିଭୌମେ ଚ ଦକ୍ଷିଣେ ॥
ଆଜି ତହିଁ କ ବୃହସ୍ପତବାର । ପୁଣି—

ଶୁକ୍ଳା ଚତୁର୍ଥୀ ଏକାଦଶୀ ନିଷିଦ୍ଧ
ଅଷ୍ଟମୀ ପୂର୍ଣ୍ଣିମୀ ତଥୈବ ବର୍ଜିତଃ ।
କୃଷ୍ଣତୃତୀୟା ଦଶମୀ ଚ ରକ୍ତୌ
ତଥା ସପ୍ତମୀ ଚତୁର୍ଦ୍ଦଶୀ ଚ ।

ଏଇଟା ବର୍ଜ୍ଜବେଲା ।

ମନ୍ତ୍ରୀ—ଏତ ଅତ୍ୟାନ୍ତ ଅପଯୋଗର କଥା ।

ରାଜା—ମିଶ୍ରେ, ତର୍କପଞ୍ଚାନନେ ! ଆପଣ ଏତେବେଳେ ରୁଦ୍ଧ ହୋଇ ରହିଛନ୍ତି କାହିଁକି ? ବର୍ତ୍ତମାନର ଉପାୟ ଉଦ୍ଭାବନ କରନ୍ତୁ ।

ଗୁରୁ—( ମହା ଚମତ୍କୃତ ) ପାଞ୍ଚଜ୍ୟୋତିଷେତ ଏପରି ଆପତ୍ତିମାନ ଦେଖେଇଲେଣି ।—

ରୁଦ୍ର—ମିଶ୍ରେ ଆପଣ ଦେଖନ୍ତୁ ଏ ଆପତ୍ତି ବଳବାନ୍ କି ନା । ଆପଣ ଅବା କହିବେ—ନ ବାରଦୋଷଃ ପ୍ରଭବନ୍ତି ରାଶୌ, ମାତ୍ର

ଅଜ-ଅଳି-ଘଟ-ମସ୍ତ୍ରେ୍ୟୀ ଜନୁ ଅସ୍ତଞ୍ଚ କାଲେ
ବୃଷଧନୁଷ୍କୁଳଖେ ବା ସ୍ୱର୍ଗରଂ ରୂଳାସ୍ୱାଂ ।
ମକର-ମିଥୁନ-ସିଂହେ କନ୍ୟକାୟାଂ ପ୍ରସ୍ତେତ
ଇତ ବଦତ ବରହ୍ନୋ ବାରଶ୍ଚେତଃ ପ୍ରଶସ୍ତଃ ।

ଗୁରୁ—ଏ ସବୁ ସାମାନ୍ୟ କଥା । ଆପଣ ଯୋଗ ଲଗ୍ନ କି ଦେଖିଲେ ?

ରୁଦ୍ର—ସେ କଥା କାହିଁକି ପଚ୍ଚରୁଛନ୍ତି—ଯୋଗ ଲଗ୍ନରେ ଯମୁଙ୍କର ବୈଧୃତ ଯୋଗ ଘଟୁଛି ।

ଗୁରୁ—(କାନରେ ହାତ ଦେଇ) ଓଃ ! ବୈଧୃତ ଯୋଗ !

ମନ୍ତ୍ରୀ—ମହାରାଜ ! ଏ ତ ଅତ୍ୟାନ୍ତ ଅପଲଗ୍ନ ।

ରାଜା—ଗୁରୁଦେବ । ଜଗନ୍ନାଥଙ୍କର ଆଜ୍ଞା କି ଲଙ୍ଘନ କରାଯିବ ?

ଗୁରୁ—ପୃଥ୍ୱୀ ପ୍ରଳୟ ହେଲେ ।

ରୁଦ୍ର—ବୈଧୃତ ଯୋଗକୁ ଅମାନ୍ୟ କଲେ କି ମଙ୍ଗଳ ଅଛି ?

ଗୁରୁ—କଣ କହୁଛନ୍ତି ? ସ୍ୱୟଂ ଭଗବାନ୍ ଯେତେବେଳେ ଆଜ୍ଞା ଦେଇଛନ୍ତି ତେବେଳେ ଆଉ କଥା ଅଛି ? ଭଗବାନଙ୍କ ସ୍ମରଣରେ ବୈଧୃତ ଛାଡ଼ ମହାବୈଧୃତ କଉପଣ ଯୋଡ଼ିବେ ।—ମହାରାଜ ! ଯମୁରୁ ସେହି ଜଗନ୍ନାଥଦେବଙ୍କ ସ୍ମରଣ ଯାତ୍ରା କରିବା ହେଉନ୍ତୁ—

ବଷ୍ଟିଃ ଶସ୍ୟଫଳଦାୟିନୀ ଭବେତ୍
ବୈଧୃତ ଧ୍ୱଜକଶ୍ଚ ଚ ସର୍ବଦା;
ବୈରିଣାଂ ଛସ୍ୱବଶ୍ଚ ଛସ୍ୱାତଥାଃ
ନୀଳଭୂଧରପତୌ ହୃଦସ୍ଥିତେ ।

ମନ୍ତ୍ରୀ—ଧନ୍ୟ ଗୁରୁଦେବ ! ଜଗନ୍ନାଥଙ୍କ ଆଜ୍ଞାରେ କ୍ଷୁଦ୍ର ମନୁଷ୍ୟର ଶାସ୍ତ୍ର !

[ ବୀରବଳର ପ୍ରବେଶ

ବୀର—ମହାରାଜ ! ଛାମୁରୁ ଆଉ ବିଳମ୍ବ କାହିଁକି ?

ରାଜା—ସମସ୍ତ ପ୍ରସ୍ତୁତ ?

ବୀର—ଆଜ୍ଞା ସମସ୍ତ ପ୍ରସ୍ତୁତ । ଚତୁରଙ୍ଗ ବଳ ସଜ୍ଜିତ ହୋଇ ସମୁଦ୍ରକୂଳରେ ଛାମୁଙ୍କର ଆଦେଶ ଅପେକ୍ଷା କରି ରହିଛନ୍ତି ଆଉ ବିଳମ୍ବ କାହିଁକି ?

ପ୍ରଶାନ୍ତ ଯେସନ ସିନ୍ଧୁ କର୍ଣ୍ଣାଟ ପ୍ରଦେଶେ ।
ସମୁଦ୍ର-ସୋଦର-ରୂପୀ ସଜ୍ଜିତ ଏ ସେନା
ନିଶ୍ଚଳ ସ୍ଥିରଭାବେ ଛନ୍ତି ଠିଆ ହୋଇ ଏବେ;
ଶ୍ରୀଛାମୁରୁ ଅଙ୍ଗରୂପୀ ପବନ ଉଠିଲେ
ଭୀଷଣ ଗର୍ଜ୍ଜନସହ ଉଠିବ ତରଙ୍ଗ—
କର୍ଣ୍ଣାଟ-ପ୍ରଦେଶ-ଦୀପ କମ୍ପିବ ପବନେ ।

ରାଜା—ମନ୍ତ୍ରିନ୍ ! ଆଉ ତ କିଛି କାର୍ଯ୍ୟ ନାହିଁ ?

ମନ୍ତ୍ରୀ—ଆଜ୍ଞା ନା ମହିମା, କେବଳ ମହାପ୍ରସାଦ ପ୍ରସ୍ତୁତ ହେଲେ ହେଲା ।

[ ଦାସର ପ୍ରବେଶ ।

ଦାସ—ମହାରାଜ ! ଛାମୁରୁ ଶ୍ରୀଅଙ୍ଗ ଢୋଳବା ହେଉନ୍ତୁ, ପ୍ରସାଦ ଆସିଲାଣି ।

ରାଜା—ଭଲ । ତେବେ ସେନାପତେ ! ତୁମ୍ଭେ ଆଗେ ଆଗେ ସୈନ୍ୟମାନଙ୍କୁ ଚଳାଇ ଦିଅ, ଆମ୍ଭେ ଏହି ଯାତ୍ରା କରି ଗ୍ଭଲିଲୁ ବୋଲି ଜାଣ ।—(ଆସନରୁ ଉଠି) ଆଉ ବିଳମ୍ବ ଉଚିତ ନୁହେଁ—ମନ୍ତ୍ରିନ୍ ! ଆମ୍ଭର ପ୍ରତ୍ୟାଗମନ ପର୍ଯ୍ୟନ୍ତ ଦକ୍ଷତା ସହକାରେ ପ୍ରଜାପାଳନ କରୁଥିବ ।

ମନ୍ତ୍ରୀ—ଆଜ୍ଞା କିଛି ଚିନ୍ତା ନାହିଁ ।

ଯବନିକା ପତନ

---

# ଦ୍ୱିତୀୟ ଅଭିନୟ

## ( ଆଦପୁର )

### ପ୍ରଥମ ଦୃଶ୍ୟ । ଆଦପୁର ଦାଣ୍ଡ ।

[ ମାଣିକ୍ୟା ଖାଲି ଦହିପସରା ଘେନି ଉପବିଷ୍ଟା । ]

ମାଣି—(ଗୋଟିଏ ମୁଦ ଦେଖୁ ଦେଖୁ) ଆହା କେଡ଼େ ସୁନ୍ଦର ! କେମନ୍ତ ଝକଝକ ହୋଇ ଚହକି ପଡ଼ୁଛି ! ପଥର ଉପରୁ ପୁଣି ଆଲୁଅ ବାହାରେ !—ଆମର ଏଥିରେ କଅଣ ଅଛି—ଆଲୁଅ ଭୁଞ୍ଜିବା, ନା ଝଟକ ଭୁଞ୍ଜିବା ? ବଡ଼ ଲୋକଙ୍କର ବଡ଼ କଥା । ଧନ ଦରବ ଯାହାର ଥାଏ ସେ ପାଞ୍ଚଟା ଗଢ଼ାଇ ନଏ—ଶୁଖିଲା ପେଟରେ ଏ ସବୁ ଦେଖି କଅଣ ହେବ ? ସେ ଏବେ ଆସୁଛନ୍ତି କେତେ-ବେଳେ । ଭଲ ଜଞ୍ଜାଳରେ ପଡ଼ିଲି ! ହାଟୁଆ ଘର—ଟିକିଏ ଉଚ୍ଚୁର ହେଲେ ଶାଶୁ ନଣନ୍ଦର ଗଞ୍ଜଣାରେ ମୁଣ୍ଡ ଟେକି ହେବ ନାହିଁ—କଅଣ କରିବି—ଆପଣା କଥାକୁ ଔଷଧ କଣ ? ଯାଏଁ ସେ ଗଛ ଛାଇରେ ବସିବି—ଯେତେବେଳ ହଉ, ଆଉ ମରିବାପାଇଁ କଣ ଘରକୁ ଯିବ ।

[ ସୈନିକଦ୍ୱୟର ପ୍ରବେଶ

ପ୍ର, ସୈନ୍ୟ—ଆହେ, ମହାରାଜ ପାଲିଙ୍କିରୁ ଓହ୍ଲାଇ ଚାଲି ଆସୁଛନ୍ତି କାହିଁକି ?

ଦ୍ୱି, ସୈ—ଦେଖୁଚ କେଡ଼େ ଭଲ ସ୍ୱଭାବ ! ମହାରାଜାଙ୍କ ପରି ଗୁଣବନ୍ତ ପର ଅଳ୍ପ ଲୋକେ ଥିବେ ! ଜଣେ ଗୋଇ କାଏ ରାଜତ କିଏ ବୋଲି ଖୋଜି ବୁଲୁଚ ଯେ ମହାରାଜ ତେଣେ ତାଙ୍କୁ ଡାକିବାକୁ ପଠେଇ ଏଣେ ପାଲିଙ୍କିରୁ ଓହ୍ଲାଇ ଚାଲି ଆସୁଛନ୍ତି ।

ପ୍ର, ସୈ—କଣ ସେମନ୍ତେ ଗୋଧ ଭରିବ ବୋଲି ?

ଦ୍ୱି, ସୈ—ହୋଉ, ଗାଉଁଲି ଲୋକଙ୍କ କଥା ଜାଣନା ? ସିଧାସିଧି ଦେଖିଲେ ସିନା ସେମାନେ ମନ ଫେଡ଼ି କଥା କହନ୍ତି ।

ଦ୍ୱି, ସୈ—କେଡ଼େ ଚେଷ୍ଟା ଲୋକ ନୋହିଲେ କି ଏଡ଼େବଡ଼ ଗାଦିରେ ବସିଥାନ୍ତେ । ଆହା ସେହି ମାଉସିଟା ନା, ଯା'କୁ ତୁମେ ଦେଖି ଥଟ୍ଟା କରି ହସୁଥିଲ ।

ଦ୍ୱି, ସୈ—ତୁନିହ ତୁନିହ—ମହାରାଜ ଆସୁଚନ୍ତି ଚାଲ ଏଠୁଁ ଚାଲିଯିବା ।

[ ସୈନିକ ଦ୍ୱୟର ପ୍ରସ୍ଥାନ ଏବଂ ପୁରୁଷୋତ୍ତମଦେବ ଓ ଦାସର ପ୍ରବେଶ ।

ରାଜା—ଦେଖିଲୁଟି ସେ ଟୋକୀ କେଡ଼େ ଛଳନୀ ?

ଦାସ—ଏ ଗାଁ ଟଣ୍ଡର ତ ସାନ ବଡ଼ଠୁ ମାଇପ ଗୋଟାଏ ଢଙ୍ଗ ଢଙ୍ଗ ଅଳଙ୍କ ଭମାନ ନାଚେ ।

ରାଜା—ଏଟା ଯେ ରାଜଦଣ୍ଡ, ବାଣିଜ୍ୟ ବ୍ୟାପାରର ସ୍ଥାନ । ସେ କେଉଁ ବଡ଼ ବେପାରୀର ଝିଅ ହେବ । ଦେଖାଯାଉ—

[ ବୀରବଳ, ବିଦୂଷକ ଓ ପସରାସହ ମାଣିକାର ପ୍ରବେଶ ।

କି ବିଷୟ ?

ବିଦୂ—ମହାରାଜ ! ଜଣେ ବ୍ୟାଧ ଜାଲ ଧରି ବଣ ଭିତରେ ଯାଉଥିଲା, ମନେ କରିଥିଲା ଯେବେ ଶୃଙ୍ଗୀ ଶାଖା ଧରା ପଡ଼ିବେ ତେବେ ମହାରାଜାଙ୍କୁ ଭେଟିବ । ମାତ୍ର ଏ ଆଶ୍ଚର୍ଯ୍ୟର କଥା—ରାଜାଙ୍କର କପାଳ, କିନ୍ତୁ ଏଣ୍ଡ୍ରିଣ୍ଡ୍ରି ଲୋକ କୁହନ୍ତି—ଜାଲ ପକାଇଲାବେଳକୁ ଗୋଟିଏ ନବଯୌବନା ଅକଳଙ୍କସୁଧାକରବଦନା ସୁମଧୁରରୂପ-ଲାବଣ୍ୟସମ୍ପନ୍ନା ରୁଚିରବେଶଭୂଷାଧାରିଣୀ ମନୋମୋହିନୀ ରମଣୀ ହଠାତ୍ ଜାଲରେ ପଡ଼ି ବନ୍ଦୀ ହୋଇଗଲା । କବିମାନେ ସବୁବେଳେ ଗଜେନ୍ଦ୍ରଗମନା, ବିମ୍ବୋଷ୍ଠୀ, କମ୍ବୁକଣ୍ଠୀ, ତିଳଚମ୍ପକନାସା, କେଶରୀମଧ୍ୟା, କୋକିଳଭାଷିଣୀ, ମୃଗନୟନୀ, ମଦନକାର୍ମୁକ-

ଭ୍ରୂଭଙ୍ଗୀଧାରିଣୀ, କୁନ୍ଦଦଶନା, ମୃଣାଳବାହୁ, କରଭୋରୁ, ପଦ୍ମଚରଣା, ଚନ୍ଦ୍ରବଦନା, ଝଙ୍କନ୍ଧାସିନୀ ଇତ୍ୟାଦି କଥା ଗୁଡ଼ାକ ଘଷି ଘଷି ତାର ସୁନ୍ଦରପଣ ଘୋଷ ପକେଇଲେଣି ନୋହିଲେ ବର୍ଣ୍ଣନାଟା ଯଦା କୋଇଥା'ନ୍ତା ଉଦ୍ଧିବେ ପଢା ଉପସ୍ଥ ଯଦଙ୍କର ମଧ ଟଳ ପଡ଼ୁଥାନ୍ତା ! ତମ୍ଭରୁ ଦେଖିବା ହେଉନ୍ତୁ ନା ବେଶଭୂଷା ଓ ସୌନ୍ଦର୍ଯ୍ୟ ଏକ ଆଡ଼େ ଆଉ ତା' ଠାଣି ଅନ୍ୟ ଆଡ଼େ—ଶୁଣନ୍ତେ ତ ଶୁଣନ୍ତୁ ।

ରାଜା—ଆଶ୍ଚର୍ଯ୍ୟ ! ଏ କଣ କବି ହେବାକୁ ଚେଷ୍ଟା ?—ବ୍ୟାଧି ଘେନ ପକେଇଲା ନାହିଁ ?

ବଦୁ—ସ୍ୱା ପୁଣି ତମ୍ଭରୁ ପଚ୍ଚରିବା ହଉଚ ? କଥାରେ କହନ୍ତି ପରା, ଘଣ୍ଟିକ ଯେ, ବରଳ ସ୍ମରଣ ଉଦ୍ରେକ ତେ—ସ୍ୱେ ଖେଳସ୍ୱା ନା ? ଆଜ ମୁଁ କଣ କବି ନୁହେଁ ଯେ କବି ହେବାକୁ ଚେଷ୍ଟା କରିବି—ତମ୍ଭରେ କଣ ତା ଜଣା ନାହିଁ ? କେବେବି ଏଭଳି କଳ୍ପନା-କଳିତରୁସମୁଦ୍ଭୂତା ଅପୂର୍ବସୌରଭସମ୍ପନ୍ନା ମନ୍ଦମଳୟାନିଳକମ୍ପିତା-ବସ୍ଥା ମନୋହାରିଣୀ କୁସୁମକଳିକା ଦର୍ଶନରେ ଅବଶ୍ୟ ପରା କବି ହବାକୁ ମନ ହବ ! ତମ୍ଭ ପୁଣି କବି ନ ହେଲେ ମନ ମନେଇବ କେମିତି ? ପଢ଼ିଛି ନଥିବ, ଆଚଛେଣ ଥୁଆ—

"ହେମ୍ନଃ ସଂଲକ୍ଷ୍ୟତେ ହ୍ୟଗ୍ନୌ ବିଶୁଦ୍ଧିଃ ଶ୍ୟାମିକାପି ବା ।"

ତମ୍ଭ କର୍ଣ୍ଣ, ସେ ତ ସୁନା; ଏବେ ସୁନ୍ଦରୀ କ ଅସୁନ୍ଦରୀ ଦେଖି ପିଇ ଦିଅନ୍ତୁ ।

ରାଜା—ଭଲ ଭଲ, ତୁମ୍ଭେ ଗୁଣିଗଣଶିରୋମଣି !

ବଦୁ—( ହେଣ୍ଡିମାର ଆନନ୍ଦ ପ୍ରକାଶ ।)

ରାଜା—ଏବେ କଥା କଣ ?

ମାଳି—(ବିକଳସ୍ୱରେ) ମଣିମା ! ଏ ତଣ କିଏ ମୋର ଦୁଧ ଦହି ସବୁ ଖାଇ କଉଡ଼ି ନ ଦେଇ ଚାଲିଗଲେ—ମାଗିଲାବେଳକୁ କହିଲେ ପଛରେ ରାଜାଙ୍କଠେ ଆସୁଛନ୍ତି ତାଙ୍କଠୁ ନବୁ !

ରାଜା — କହନ୍ତୁ ନ ଦେଇ ଖାଇଲେ ? ତୁମେ ବା ଦେଲ କେମନ୍ତ ? ଅମ୍ଭର ଶାସନାଧୀନରେ ଏତେ ବଳ ଅଛି କାହାର ?—ଅସମ୍ଭବ ।

ମାଣି — ମଣିମା କେବେ ମିଛ ନୁହେ । ଦେଖନ୍ତୁ (ଅଙ୍ଗୁଷ୍ଠ ପ୍ରଦାନ ।)

ରାଜା — ଏ ତ ଅତି ସୁନ୍ଦର ବହୁମୂଲ୍ୟ ଅଙ୍ଗୁଷ୍ଠ—ଏଥିର ଅର୍ଥ କି ? ଏ ଚୋର କି ? କାହୁଁ ଆଣିଲୁ ?

ମାଣି — ମଣିମା ଆମେ ଗରିବ ଲୋକ, ଏ ଆ କାହୁଁ ପାଇବୁଁ ? ସେମାନେ ଏ ମୁଦ୍ରିକି ଦେଇ କହିଲେ କାଳେ ରାଜାଙ୍କ ପରତେ ନ ଯିବ, ତୁ ଏ ମୁଦି ରଖିଥା, ତାଙ୍କୁ ଦେଖେଇ କହିବୁ !

ଦାସ — ମହାରାଜ ! (ହାତ ବଢ଼ାଇ ମୁଦି ଘେନି କିଛି କାଳ ଦେଖି) ଆଜ୍ଞା ଏତ ବଡ଼ଠାକୁରଙ୍କ ଶ୍ରୀହସ୍ତ ମୁଦି ପରି ଦିଶୁଚି !

ରାଜା — କଣ, ବଡ଼ଠାକୁରଙ୍କ ମୁଦି ? ତୁମେ କଣ ପାଗଳ ?

ବିଦୂ — ଆଜ୍ଞା ଦାସ ଆମର ବାସ୍ତ ହେଇଗଲେଣି । ହୋଇହୋ ତୁମର ଜନ ମୁଣ୍ଡରେ ଲୁଚି ଲୁଚି ପାଳିଟିଗଲଣି ପରା !—ଶୁଣ୍ଡେ ଛନ୍ଦିରେ ଶାଣ ଦେଇଦିଅ, ନୋହିଲେ କାହାର ସଙ୍ଗରେ ବଦଳେଇ ନିଅ !

ରାଜା — ତୁମରି ତ ତୀକ୍ଷ୍ଣବୁଦ୍ଧି, ତା ତାଙ୍କୁ ଦିଅ ?

ବିଦୂ — ଛମୁରୁ ଯଥାର୍ଥ ଅଜ୍ଞ ହେଲେ, ମାଫକ ମଣିମା ମୁଁ ବି ତା ସହଜରେ ଛଡ଼ୁ ଛୁ । ଦାସଙ୍କର ବୁଦ୍ଧି କେହି ମନଶ୍ୱେର ଦେଖି ପକେଇଚି ପରା ।

ଦାସ — (ସ୍ୱଗତ) ଠାକୁରେତ ଥିବେ ବୋଲି କହୁଥିଲେ, ସଜାକୁ ଆସି ସ୍ୱାର ବା ଦୁଧ ଦହି ଖାଇଥିବେ । ଏ କଥା ମଣିମାଙ୍କୁ ବର୍ତ୍ତମାନ କହିବାର ପ୍ରୟୋଜନ ନାହିଁ, ପ୍ରମାଣ ହେଉ । (ପ୍ରକାଶ୍ୟେ ମଣିମା, ଏ ଜନ୍ମେ ବଡ଼ଠାକୁରଙ୍କ ମୁଦି—ଦେଖିବା ହେଉନ୍ତୁ ; ହୋଇ ଗୋ, ଯେଉଁମାନେ ଦୁଧ ଦହି ଖାଇଗଲେ ସେମାନେ ଦେଖିବାକୁ କେମନ୍ତ ?

ମାଣି—ଗୋସେଇଁ, ଜଣେ କାଳିଆ ଆଉ ଜଣେ ଗୋରା । ଦୁହେଁଯାକ ଖାଇ ଅଳ୍ପକ ବଳାକରୁ ତାଙ୍କ ଘୋଡ଼ା-ସନ୍ଦେଶ ଦୁହିଁଙ୍କି ଖାଇବାକୁ ଦେଲେ । ଭଲଭଡ଼ ମାଗିଲରୁ କାଳିଆ ଜଣକ ନାହିଁ ନାସ୍ତି କରି ଦେଲେ, ଆଉ ଗୋରା ଜଣକ ଏ ମୁଦି ଦେଇ ଗଲେ । ମୁଁ ଭଲ ଦୁଃଦଶାରେ ପଡ଼ିଲି, ଗୋସେଇଁ, ମୋତେ ରକ୍ଷା କର ! (ଲୋତକ ଅଞ୍ଚଳରେ ପୋଛିବା ।)

ଦାସ—ଶୁନହେ, ଶବକ ହୋନା, ତୋର କଷ୍ଟ ଦପାନ । ମଣିମା, ଦେଖିବା ହେଉନ୍ତୁ, ଆଗେତ ଏତେ ବହୁମୂଲ୍ୟ ମୁଦି ମିଳିବାର ଦୁଷ୍କର—ତହିଁରେ ପୁଣି ଏହା ଅବିକଳ ସେହି ମୁଦି । ପୁଣି ଦେଖନ୍ତୁ, ଯେଉଁ ଦୁହେଁ ଖାଇଥିଲେ ସେ ଦୁହିଁଙ୍କ ଭିତରେ ଜଣେ କଳିଆ ଆଉ ଜଣେ ଗୋରା । କାଳିଆ ଆମର ନଟନାଗର—ସେତ ମନା କରିଥିବ ଆଉ ଗୋରା ଜଣକ ସିଧା ମଣିଷ ମୁଦି ଦେଇ ଗଲା ।

ରାଜା—କି ଆଶ୍ଚର୍ଯ୍ୟ ! ଏପରି ଲୋକ କି ସଂସାରରେ ନ ଥିବେ ?

ଦାସ—ମଣିମା ଆଜ୍ଞା ପ୍ରଶ୍ନ ଅଛି—ହୋଇ ଗୋ, ତାଙ୍କ ଭିତରେ ବଡ଼ କିଏ ?

ମାଣି—ଗୋରା ଜଣକ ।

ଦାସ—ତୁ ଯେ କହୁଚୁ, ଘୋଡ଼ା ସନ୍ଦେଶ ଖାଇ ଗଲେ, ତାଙ୍କ ସଙ୍ଗେ କଣ ଘୋଡ଼ା ଥିଲା ?

ମାଣି—ଗୋସେଇଁ ଗୋରା ଜଣକ କାଳିଆ ଆଉ କାଳିଆ ଜଣକ ଧଳା ଘୋଡ଼ାରେ ଚଢ଼ିଥିଲେ—ମୋତେ ଦୟା କର— ।

ଦାସ—ଉହୁ ଭୂତ ଏହୁକ୍ଷଣି ତରୁଗୁଣ କହଡ଼ି ପାଇଲୁ । ଦେଖି ଯାଆନ୍ତୁ ମଣିମା ! ଭଲ ତୋତେ ସେ ଚକ୍ମା ଦେଇଚନ୍ତି—ତାଙ୍କ ନାଁ, କି ତାଙ୍କ ମା ବାପାଙ୍କ ନାଁ, କି ଆଉ କିଛି ?

ମାଣି—ନାହିଁ ଗୋସେଇଁ । ସାନ କହୁଚି ଯଶୋଦା ବୋଲି ଜଣେ ଧାଇମା ଘରଠଁ ଥିଲେ ସେ ସେଠେଇଁ ଗାଇ ମଇଁଷି ଦୁହିଁ ହାତରେ ବଣ୍ଟି ଦେଉ ଥାଇଚ । ମୋତେ ଆଉ କିଛୁ ଜଣା ନାହିଁ, ତାଙ୍କ ସହସଙ୍କ ନିଁ। ଅଙ୍କର ଆଉ ଜର୍ଧର ।

ରଜା—ଏ କ ସ୍ୱପ୍ନର ବାର୍ତ୍ତା ?

,ବଦୁ—ସାର ! ମୁଁ ଶୋଇଚ ନା ଚେଇଁଚ ?

ସାର—ତୁମେ ବା ଶୋଇଥିବ ମୁଁ ତ ଚେଇଁଚ । ଏ କଣ ?

ଦାସ—ଏବେ ମହାରାଜ ! ସବୁ ଘୂଷାନ୍ତୁ ବପ୍ସସ୍ତ,
ଫେଡ଼ନ୍ତୁ ସଂଶୟ ଚନ୍ତା ଅଛଇ ଯେତେକ—
ଏ ନୁହେଁ ସ୍ୱପ୍ନର କଥା । ଦେବତାଙ୍କ ମାୟା
ଏକେ ବୁଝି ଅଗୋଚର, ତହୁଁ ବଳ ପୁଣି
ଯେ ଦେବ ମହତ୍ ମଣି ଦେବ ସମାଜରେ—
ଯା ନାମେ ଅମରାବତୀ କମ୍ପଇ ସଘନ,
ହର ବ୍ରହ୍ମା ଦେବେ ମଧ ଉଳକ କେବେହେଁ
ଲଘି ନ ପାରନ୍ତି ଯାର ଅମେଘ ଆଦେଶ—
ତୁମ୍ଭେ କେ ପାରବ ତାର ସୂକ୍ଷ୍ମ ମାୟାଜାଲ ?
ମାକଡ଼ସା ତନ୍ତୁଠାରୁ ସୂକ୍ଷ୍ମ ତନ୍ତୁ ତାର,
ଛିଣ୍ଡାଇବ ତାକୁ—ଏଡ଼େ ବଳବାନ କିଏ ?
ଏ ନୁହେଁ, ରଜନ, ଭବେ ସାମାନ୍ୟ ମନୁଷ୍ୟ—
ଶ୍ରୀରାଧିକା ଅବତାର ଜାଣିବେ ନିଶ୍ଚୟ,
ରାଧିକା ଯେ ପ୍ରାଣପ୍ରିୟା ଦେବଦେବଙ୍କର !
(ମାଣିକପ୍ରତି) ଭଲ କେତେ ହେଲ ତାଙ୍କୁ ଦେଖିଚ ?

ମାଣି—ଏଇ ଦଣ୍ଡେ ଖଣ୍ଡେ ତ—ଦେଖୁ ଦେଖୁ କୁଆଡ଼େ ହେଉଛି ଗଲେ ?

ରଜା—କ ଆଶ୍ଚର୍ଯ୍ୟ ।

କାସ—କୁଆଡ଼େ ଯାଉଚନ୍ତି କିଛି କହୁଥିଲେ ?

ମାଣି – ତାଙ୍କ ନଡ଼େଇକି ଯାଉଚନ୍ତି କହୁଥିଲେ !

ରାଜା – କଣ ? – ଦାସ,

ଦେବ ଜଗନ୍ନାଥ ସହ ବଳଭଦ୍ର ଭ୍ରାତା
ଆମ୍ଭର ନିମନ୍ତେ ଏତେ କ୍ଲେଶ ସହ୍ୟକରି,
ଆମ୍ଭର ପ୍ରତିଜ୍ଞା ଏବା ପୁରାଇବା ଆଶେ,
ଝଟେ ଯାଉଛନ୍ତି ତାଙ୍କ ସ୍କନ୍ଧରେ ସ୍ପର୍ଶିବେ ?
ପାରିଲି ମୁଁ ଏତେଦିନେ ଚିହ୍ନି ଆପଣାକୁ
ଭଲ କରି ଭବେ, କେହୁ ଏହୁ ଧରାଧାମେ
ମୋଠାରୁ ଭକତ—ପୁଣ୍ୟ ଭକ୍ତି ରସେ ମଗ୍ନ ?
ଯା ଲଗି ଦେବେ ଏ ଶ୍ରମ ସ୍ୱୀକାର କରନ୍ତି,
ଅଶେଷ ପୂଜିତ ସେହୁ ମନୁଷ୍ୟ-ସମାଜେ —
ବଳି ତାହାଠାରୁ ନାହିଁ ଜଗତରେ କେହୁ !
କଠୋର ତପସ୍ୟା! କରି ଜଗତ-ଜନମ
ପୀଡ଼ି ନିଜ ଦେହ ମନ ଅନନ୍ତ କଷଣେ
କଙ୍କାଳ ବିଶିଷ୍ଟ ଭୂତ ଶୃଗାଳ ଭ୍ରାମକ
ହେଲେ ମଧ୍ୟ କେତେ ଯାର ସହଜେ ଦର୍ଶନ
ପାଇ ନ ପାରନ୍ତି, ଦେବ ଦେବ ବ୍ରହ୍ମା ଝଞ୍ଜେ
ଦର୍ଶନକୁ ଗଲେ ଯାର ସ୍ତୁତି କରୁ କରୁ
ଭଗ୍ନ ହୁଏ ଗଳାସ୍ୱର, ସେ ଦେବାଧିଦେବ
ମୋ ପକ୍ଷେ ଯଦ୍ୟପି ହେଲେ ସମରେ ବାହାର
କିଏ ପୁଣ୍ୟବାନ ବଳି ? କିଏ ମୋ ସମାନ ?
ପଗ୍ଭର ଗୋଇ କ, ଦାସ, କି ତାର ପ୍ରାର୍ଥନା —
ସେ ଯାହା ଇଚ୍ଛିବ ନାହିଁ ତହିଁ ମୋର ମନା ।

ବଦୁ—ଧନ୍ୟ ମହାରାଜ, ଯୁଷ୍ମଙ୍କର ଅଗୋଚର ମହିମା ।

ଦାସ—ମହାରାଜ ! ଏତେଦିନେ ବୁଝିଲି ଦୁର୍ଗାମାଧବଙ୍କର ଦର୍ଶନ ଭଣେ
କାହିଁକି ଯାତ୍ରା କରିବା କାରଣ ଦେବଙ୍କର ଆଜ୍ଞା ହୋଇଥିଲା ।

ମାଣିକ ! ଏବେ କଣ ମାଗୁଚ ? ଦେଖ, ଜଣେ ଜଗା ଆଉ ବଳଆ ଆସି ତୁମ ପସରାରୁ ଦୁଧ ଦହି ଖାଇଗଲେ ! ତୁମଠୁଁ ଭାଗ୍ୟବତୀ କାଏ ?

ମାଣି—(ସ୍ୱଗତ) ମୁଁ କେଡେ ଚଣ୍ଡାଳୁଣୀ, ଜଣେ ମହାପ୍ରଭୁଙ୍କୁ ଚହ୍ନି ପାରିନି ନାହିଁ ! (ପ୍ରକାଶ୍ୟେ) ଗୋସେଇଁ, ଯେବେ ମହାପ୍ରଭୁ ଖାଇଚନ୍ତି, ତେବେ ମୋର ଆଉ କେଉଁ କଥାକୁ ବାଞ୍ଛା ? ଖାଲି ଏତିକ ଯେ, ଏହା ସମସ୍ତେ ଜାଣନ୍ତୁ ।

ରାଜା—ଭଲ, ଦେଖିଲ ଦ.ସ, କେଡ଼େ ଚତୁରୀ । ମାଣିକ ! ତୁମେ ବଡ଼ ଭାଗ୍ୟବତୀ—ତୁମେ କାହାର ଝିଅ ?

ମାଣି – ବୃଷ ବେହେରାର ।

ରାଜା—ବୃଷଭ – ବୃଷଭନୁ ବେହେରାର ? ତେବେ ଦାସ, ତୁମେ ମାଣିକା କ କହ ଯେ ସେ ଏହି ସ୍ଥାନରେ ଆଜ ଯେତେକ ବୃନ୍ଦାବନ ତେତେକରେ ଗୋଟିଏ ପାଟଣା ବସାଇ ତାହାର ନାମ ମାଣିକା-ପାଟଣା କରି ରଖାଯିବ ଏବଂ ତହିଁର ରାଜସ୍ୱ ଛଡ଼ ହେବ । ମାଣିକା ଜଣେ ତାହା ଭୋଗ କରି ପରେ ଯାହାକୁ ଦେଇଯିବ ସେ ତାହା ଭୋଗ କରିବ । ଆମେ ଏହିକ୍ଷଣି କେବଳ ଲେଖି ଦେଇଯାଉଚୁଁ, ପରେ ତାମ୍ରଶାସନ ରଖାଯିବ । ଆମେ ଆଗେ ଯାଉଚୁଁ, ତୁମେ ସବୁ ସ୍ଥିର କରି ପଛାରୁ ଆସ ।

[ ଜଣେ ଗୋପାଳଙ୍କ ପ୍ରବେଶ ଓ
ଦଣ୍ଡ ପ୍ରଣିପାତ ]

ମାଣି—(ପିତାଙ୍କୁ ଦେଖି ଟିକିଏ ସମ୍ଭ୍ରମ କରିବା । )

ରାଜା—କିଏ ତୁମେ ? ଉଠ ।

ଗୋପାଳ—(ଉଠି) ମହାରାଜ ! ମୁଁ ତ ବୃଷଭ ବେହରା । ଛାମୁରୁ ବଡ଼େ ହେଇଚ ଶୁଣି, ତେଣେ ଗୋପାଳଙ୍କୁ ଯେପେ ଯେପେ ଜାଣେଇବା

ପାଇଁ ଜହ୍ନଦେଇ ଛାମୁକୁ ଆସିଛି । ସେ ସ୍ୱେ ମାଣିକାର ମା ଆଜ ଶାଢ଼ୀ ଛାମୁ ବଢ଼ାଇବାକୁ ଆସିଚନ୍ତି ।

ରାଜା—ଡାକ ତାଙ୍କୁ ।

ବୃଦ୍ଧ—ଆସ ଲୋ ।

[ ହଳଦୀଛଳ, ଅର୍ଘ୍ୟପାତ୍ର, ଚନ୍ଦନ ଓ ପୁଷ୍ପ ସହିତ ବୃଦ୍ଧଜଣ ଗୋପାଳୁଣୀର ପ୍ରବେଶ ।

ରାଜା—(ଚର୍ମପାଦୁକା ଅନ୍ତର କରି ଦକ୍ଷିଣ ଗୋଡ଼ ବଢ଼ାଇଦେବାଛ ।

ଗୋପାଳୁଣୀ ଦ୍ୱୟ—(ହୁଳହୁଳୀ ସହିତ ଯଥାବିଧି ବନ୍ଦାପନା କରିବା ।)

ନେପଥ୍ୟେ—(ଶଙ୍ଖଧ୍ୱନି ।)

ରାଜା—ଭଲ, ଯାଅ, ସମସ୍ତ ସ୍ତ୍ରୀଲୋକଙ୍କୁ ଡାକଆଣି ଜଗନ୍ନାଥଙ୍କ ନାମରେ ଆଜ ମାଣିକା ପାଇଁ ଶୁଭ ଦିଅ ।

[ ମାଣିକା ସହ ଗୋପାଳୁଣୀ ଦ୍ୱୟର ପ୍ରସ୍ଥାନ ।

ରାଜା—ବୃଦ୍ଧବନ୍ଧୁ, ତୁମର ଆଜ ମନକାମନା ପୂର୍ଣ୍ଣ ହେଲ ! ସ୍ୱେ ତୁମର ଟିଅ ମାଣିକାଠାରୁ ଦୁଧ ଦହି ଲେକେ ଜଗନ୍ନାଥେ ଆସି ହାତପାତ ଖାଇ ଯାଇଛନ୍ତି ! ତୁମେ ସେ ସବୁ ପଛେ ଶୁଣିବ । ବର୍ତ୍ତମାନ ଆମ୍ଭ ସଙ୍ଗେ ଆସ, ଲେଖା ଘେନ ଆସିବ ।

[ ବିଦୂଷକ, ସାଇବଲ, ରାଜା ଓ ବୃଦ୍ଧର ବେଢ଼ହେଉର ପ୍ରସ୍ଥାନ ।

ଦାସ—( ସ୍ୱଗତ ) ମହାରାଜଙ୍କର ଦେବଙ୍କଠାରେ ଅମୂଲ୍ୟ ଭକ୍ତି । ଅନ୍ୟ କୌଣସି ରାଜାଙ୍କ ରାଜ୍ୟରେ ରହିବାକୁ ପର ମନ ହେବ ନାହିଁ । (ଯେପରି ବିଦ୍ୟା ବୁଦ୍ଧି ସେହିପରି ଭକ୍ତିଭାବ ଆଉ ସେହିପରି ଦୟା । କୌଣସି କଥାକୁ ହଟିବେ ନାହିଁ । ସବୁ ବିଷୟରେ ତତ୍ପର । କାହାକୁ ତୁଚ୍ଛ କରିବେ ନାହିଁ ।) ଯାହାହେଉ ଏବେ ଏ ଗୋଟିଏ ସୁନ୍ଦର କୀର୍ତ୍ତି ସ୍ଥାପିତ ହେଲ—ସବୁ ସେହି ମାୟାବୀ ନଟବର ଜଗନ୍ନାଥଙ୍କର କୌଶଳ !

[ ବୃଦ୍ଧର ବେଢ଼ହେଉର ଲେଖା ହସ୍ତେ ଅନ୍ୟ ଗୃହଜଣ ବେଢ଼ହେଉ ସହିତ ପ୍ରବେଶ

ଦାସ — କେଉଁଠି ଅଛି ?

ବୃଷ—ହଁ ଆଜ୍ଞା ।

ଦାସ—ଦେଖେଁ । (ହାତ ବଢ଼େଇ ନେବାର ଭଲ ହେବେ ଆସ ସମସ୍ତେ ଯାଇ ପାଟଣା ବସେଇବାର ସ୍ଥାନ ଦେଖିବା ।

ସମସ୍ତ ଗୋପାଳେ—ରଣ୍ଡକୁ ଗୋଟେଇଁ, ମାଧୋଇଙ୍କ ନାଁରେ ଆଗେ ନନ୍ଦିଡ଼ୀ ଖେଳ ହଉ, ମାଇପେ ସବୁ ଆସି ଜୁଣ୍ଡ ହେଇ ଯାଆନ୍ତୁ, ତେବେ ଆମର ଭାଗ୍ୟକୁ ପିନା ପ୍ରଭୁଙ୍କ ପ୍ରଭେ ଏ ନାଟ ରହିବ; କାଲିଆ ଘୁଞ୍ଚନ୍ତୁନେ ଆମର ! — (ନନ୍ଦିଡ଼ୀ ଖେଳ ଓ ମଝେ ମଝେ ନେପଥ୍ୟେ ହୁଳହୁଳି ଓ ଶଙ୍ଖଧ୍ୱନି ।)

କାହିଁ ପାଇଁ କାନ୍ଧୁ ଓଗାଳୁ ବାଟ—କାନ୍ଧୁ ହୋ ।
କଂସ ରାଜାରେ କେ ଦେବ ଘାଟ — କାନ୍ଧୁ ହୋ
ଖଳ ଶତ୍ରୁ ମୋର ଖଳ ନନ୍ଦେ — କାନ୍ଧୁ ହୋ ।

ଦାସ—ଭଲ ଥାଉ—ଚାଲ—ଶୀଘ୍ର ଶୀଘ୍ର ଯିବାକୁ ହେବ । ପଛେ ପ୍ରଭୁ ହଥାଗଲେ ମନ ପୁରିବ ନେଇବ । (ସମସ୍ତଙ୍କର ପ୍ରସ୍ଥାନ ।

ଯବନିକା ପତନ ।

ନେପଥ୍ୟେ – ରାଗିଣୀ କାଫି । ତାଳ ଆଡ଼ ଖେମଟା ।

ଧର ଏକତାନେ ଶ୍ରୀ ଜଗନ୍ନାଥ ନାମ
କାଞ୍ଚିଦେଶେ ମୂଢ଼ଯାଜ୍ଞା ଫଳ ଭକ୍ତକାମ ।
ଗନ୍ଧର୍ବୀ ଦେବୀ ଅପ୍ସରା, ଗାଅ ଏକତାନ ଧରି,
ଭକ୍ତବନ୍ଧୁ ଭକ୍ତପ୍ରାଣ, ଘୋଷ ଧର୍ମଧାମ । ୧ ।

# ତୃତୀୟ ଅଭିନୟ

## ( କାଞ୍ଚି ଦେଶ )

### ପ୍ରଥମ ଦୃଶ୍ୟ । ରାଜାନ୍ତଃପୁର ଉଦ୍ୟାନସ୍ଥ ଲତାକୁଞ୍ଜ ।

[ ପଦ୍ମାବତୀ ବିରହକାତରଚିତ୍ତ ଶଯ୍ୟୋପରି ଶୟାନ ଏବଂ ଶଶିକଳା ଓ ସୂର୍ଯ୍ୟବାଳାର ପାର୍ଶ୍ୱେ ବସି ଚାମର-ବ୍ୟଜନ । ]

ଶଶି—ଓଃ ! କେତେଦିନେ ଯେମାନେଇଙ୍କି ଆଜ ଟିକିଏ ନିଦ ଆସିଚି !

ସୂର୍ଯ୍ୟ—ଶଶି ! ଦେଖନି ସଖି, କି ସୁନ୍ଦର ରୂପରେ କେମନ୍ତ କାଳି ପଡ଼ି-ଯାଉଚି ! ଆହା ! କାହିଁ ଚକୋଳିଆ ହୋଇ ଗଲାରେ ଭାସି ବୁଲୁଥାନ୍ତେ ନା ଏହିପରି ଦୁଃଖ କଷଣରେ ଜଳି ହାଡ଼ ଗୁଡ଼ିକ ରହିଲାଣି ! ଆହା ! (ଅଞ୍ଚଳଦ୍ୱାରା ନେତ୍ରଜଳ ପୋଛିବା ।)

ଶଶି—ସଖି, ଯାର ମନ ସେହି ଜାଣେ । ତାଙ୍କ ମନରେ ଯେ ଯେ ଜାଇ ଯାଉଛି ହେଉଥିବ, ତେମେ ଆମେ ବାହାର ଦେଖିବା ପରା; ତାଙ୍କର ମନ ଜାଣିଥିବ ! ପଦ୍ମ-ପତ୍ର-ବେଣୀରେ ବନ୍ଧାରେ ବହିଲେବି ତାଙ୍କୁ ପବନ ତତଲ ଲାଗୁଚି ! ଆଉ କଥା ଦେଖିଣିକି ଥାଉ, ଶେଯରେ ଶିରୀଷ ଫୁଲ ବିଛା ହୋଇଚି, ସେ କଦଳିକନ୍ଦ କଣ୍ଟା ପରି ବୋଧ ହୁଚି ! ଆହା !

> ପୀଡ଼ୁଛି ଏପରି ପ୍ରାଣ ବିରହ-ଯନ୍ତ୍ରଣା,
> ଭଲ ମନ୍ଦ ତହିଁ କିଛି ନାହିଁ ବିଚାରଣା !

ଏହି ଯା କଥାରେ କହିଥାନ୍ତି ସେମନ୍ତ । ପାଞ୍ଚସାଥିରେ ମଜାଇ ବସନ୍ତ ଆଉ ବିରସ ଥାନ୍ତି, ଦିନେ ହୋଇଚ ଯେମାନେଇଙ୍କି ଭାତ ରୁଚିଲା ନାହିଁ । ଶୋଇବା, ବସିବା, ବୁଲିବା, ଖାଇବା, ପିଇବା ସବୁ ତ ଛାଡ଼ ହେଲାଣି । (ଦେହରେ ଅପର ହସ୍ତ ଦେଇ) ଉଦରେ ହାତ ବୁଲେଇ ଦେଖିଲ କେମନ୍ତ ତାତୁଛି; ସବୁବେଳେ ତ ବାଘୁଣୀ ପରି ! ଆହା ! କେବେ ବଞ୍ଚିବ ସେ ! (ନେତ୍ରଜଳ ତ୍ୟାଗ ।)

ସୂର୍ଯ୍ୟ—(ଦେହରେ ଅପର ହସ୍ତ ବୁଲାଇ ଦେଖି) ପାଝସାଆନ୍ତ୍ରେ ଭଣ
ଜାଣନ୍ତି ନାହିଁ ଯେ କେମାଦେଇ କାହିଁକି ଏତେ ଆକୁଳା ହେଉଛ,
ଭାହିଁରେ ମନ ଲାଗୁନାହିଁ, ଭାହିଁକି ? ତେବେ ଭାହିଁକି ସ୍ୱାର ହଷାର
କରୁ ନାହାନ୍ତି ?

ଶଶି—ସୂର୍ଯ୍ୟ ! ତୁମେ କଣ ବାସ୍ୟାଣୀ ହେଉଛ ? ଦେଖୁ ଥିଲ ଏଣିକି
ଘଣ୍ଟା ସେଣିକି ଘଣ୍ଟା ବଇଦ ଆସି କେତେ ଔଷଧ ନ କଲେ;
(ଯାର ମନରେ ଘୃଣ ଲଗିଛ, ଯାର ଅନ୍ତରରେ ପୋକକାଟୁଛ, ତାର
ବଇଦ କଣ କରିବ ମ ?—ହାତ ଦେଖି ସିନା ? କହିବ ଗେଟାଏ
ପାଞ୍ଚ କର ନୋହିଲେ ନାରାୟଣ ତଇଳ ଘଷ ।)

ସୂର୍ଯ୍ୟ—ଆଉ ମନ, ତୁମ ଆମଙ୍କୁ ବଇଦ କଲେ ?

ଶଶି—ହଉଛି ଭାହିଁକି ? ଯା କହିଲ ତା ତ ହଚଛ କଥା, ଆମେ ପସ
ଏହକ୍ଷଣି ଓଡ଼ିଶା ରଜାଙ୍କୁ ଦେଇ ଆସନ୍ତୁ । ଆଉ କଣମ; ମାଇ-
କନିଆ ପୁଅରେ ମାଇକନିଆ ବଇଦ ହେଲେ ସିନା ସବୁ ବୁଝି-
ପାରିବ । ଅଣ୍ଡିରପୁଅ ଗୁଡ଼ାକ କି ବୁଝିବେ ମ—(ଏସ୍ତ ତେଣ୍ଡୁ ଭଣ
ତାଙ୍କର କହୁଡ଼ି ଖାଇବାର କଥା — ମନ ବଡ଼ ବଇଦ ।)

ସୂର୍ଯ୍ୟ—ମନତ ବଡ଼ ବଇଦ । ତା ସେଠେ ଏବେ ମା ବାପ ହଉ ନାହାନ୍ତି
ଭାହିଁକି ? କଉଁ କଥାରେ ଠାକୁରେ ତାଙ୍କୁ ଜ୍ୱରା କରିଚନ୍ତି ଭଲ !

ଶଶି—ସେଇଠିତ ଗଣ୍ଠି ପଡ଼ିଛ । ତୁମେ କଣ ଜାଣ ନା ଯେ ରଜା ଆମର
ଠାକୁର ରଜାଙ୍କୁ ହାଣ୍ଡି ବୋଲି ଗାଳି ଦେଇଚନ୍ତି ।

ସୂର୍ଯ୍ୟ—ନା କେମାଦେଇ ଏବେ ଆମର ସେଥିପାଇଁ ଏତେ ଝୁରୁଚନ୍ତି
କାହିଁକି ? କଥାରେ କହନ୍ତି—

(ପାଣି ଖାଇବ ଛାଣି, ବନ୍ଧୁ କରିବ ଜାଣି, କହୁଡ଼ି ନବ ଗଣି ।)

ପାଣି ତ ଛଣା ହଉଥିଲା, ବୁଝିଲେ ନାହିଁ ଟିକାଏ ? ଆଉ ଗୋଟାଏ
ହବ, ତହିଁରେ କଣ ?

ଶଶି—ବୁଝିବେ କଣ ଆମ ତୁମମାନଙ୍କୁ କେହି ଜାଣିମ ? ସେ ତ ଠାକୁର ଜନାଙ୍କୁ ଦେଖିବା ବେଳୁଁ ଜମ୍ଭା ସେଭଳି ମନ ରଖିଲେ (—ଆଉ ଚୁଣିବାକୁ ହେଲ, ନା ଭଉଡ଼ ଗଣିବାକୁ ହେଲ, ନା ବନ୍ଧୁ ଜାଣିବାକୁ ହେଲ ? ଦେଖିଲୁ ମାତ୍ରରେ ତ ସବୁ ଗଛ ଗଲ ଆଉ ପରଖିବା ଯାଏ କାହିଁକି ? )

ସୂର୍ଯ୍ୟ—ବଡ଼ ଭରତଶଥା ହାଲୁବା ଉରବ ।

ଶଶି—ମ୍ ସ୍ୱା ଆହୁଣ କହୁଚ, କେତେବେଳେ କହିଁଛା ଷଷ୍ଠ ହେଲ ଥାଏ କହୁଲ ?—ବୋଲେ—

(ନବଯଉବନୀ ବାଳୀ—

ଆଜ ଯେତେ ସବୁ କଥାରେ ହାଲୁବା ଲଜ୍ଜାରେ ଏକା· ସେ ଷଷ୍ଠ ।) ସ୍ୱା ଜାଣନା ?—ଆପଣା କଥାରୁ ବୁଝିଲ, କେମନ୍ତ ନୂଆ ଭାଉପଣ ହେଇ ଥାଅ !

ସୂର୍ଯ୍ୟ—ଆମ କଥା ଆଉ ପଚାଯର କିଁଅ କଥା ?

ଶଶି—ପ୍ରେମଠି ତୁମେ କଣ ଆଉ ରଜାପରକିଁଅ କଣ ? (ସେଠି ସବୁ ସମାନ—ପାଞ୍ଚ ପଚ୍ଚୁଶ ସବୁ ଏକାଠି; କହନ୍ତି ପରା ପ୍ରେମ ଅନ୍ଧ ?)

ସୂର୍ଯ୍ୟ—ଭଲ ଏ ହାଡ଼ ବୋଲି କହୁଲଉଁ ତ ସେ କହଲେ ମୁଁ ଯେବେ ତୋ ଠିଅକୁ ହାଡ଼ ହାତରେ ନ ଦେବ ତ ଦେଖିବୁ, ଯେ ସ୍ୱା କହୁଲ ତା ସଙ୍ଗେ—

ଶଶି—(ହାତଠାରି) ତୁନହୋ ତୁନହୋ—ସ୍ୱା ପୁଣି ଏଠେଇଁ କହିବାକୁ ଅଛୁ ? ସମୁଦ୍ରରେ ତ ଏହୁକ୍ଷଣି ଜଆଁ ଲାଗଇ ଥିଲ ! ଆମର ତହିଁରେ କଣ ଅଛୁ ?—ଏ ସବୁ ଦେଖି ହୃଦ ଫାଟିଯାଉଚ ପରା !

ସୂର୍ଯ୍ୟ—ସତ୍ୟ, ମୋ ମନ ଏକା ଧାଣ୍ଡି ହେଉଚ ! ତୁମମାନଙ୍କ କପାଳରେ କ'ଣ ଅଛୁ ତା କେମନ୍ତ ଜଣ ଜଣା । ମୋତେ ମାତ୍ର ବୋଧହୁଏ ଗୋଟାଏ ବଡ଼ କାଣ୍ଡ ହବ !

ଶଶୀ—ସ୍ୱା ପୁଣି ଘେରୁଛ ? ଯେଉଁଠି ମା ବାପ ହେଉଛନ୍ତି ସେ ଠାକୁର ତାଙ୍କୁ ବଶ ହେବେ ନାହିଁ ଆଉ ସ୍ୱେ ଏଣେ ତାଙ୍କୁ ଛାଡ଼ି ଆଉ କାହାକୁ ବଶ ହେବେ ନାହିଁ—ଏପରି ଅବସ୍ଥାରେ କଣ ଭଲ କଥା ହୁଏ ? ମୋତେ ତ କିଛି ଭଲ ଦିଶୁ ନାହିଁ—କଷ୍ଟେ ଗୋଟାଏ ଖାଣ୍ଟି କାଣ୍ଡ ହବ ପରା ! ଯା ପରୁ, ଆଉ ସେ ସବୁ କଥା ପକା ନା, ମନ ଦହି ହୋଇ ଯାଉଛି ! ଅରେ ତୋମାନଙ୍କୁ ଅନେଇଲେ ମନର ମନ ବାନ୍ଧ ପଡ଼ୁଛି ! ( ଦୀର୍ଘନିଶ୍ୱାସ ପରିତ୍ୟାଗ କରି ) ଭଗବାନ୍ ! ତୁମର ହାତରେ ସବୁ କଥା ଦୁଃଖୀ ଦୁଃଖ ବାରେ ଶୁଣନ୍ତୁ ! ( ତୃଣିପାତ ପୂର୍ବକ ଧୀରେ କନ୍ଦନ । )

ସୂର୍ଯ୍ୟ—(କାନ୍ଦୁ କାନ୍ଦୁ ଅଞ୍ଚଳରେ ଶଶୀର ଓ ଅପଣାର ଲୁହ ପୋଛୁ)— ଆଜ କାନ୍ଦନା, ସ୍ୱେ କଣ ? ତୁମେ ଯେବେ କାନ୍ଦିବ ତ ତୋମାନଙ୍କୁ ବୋଧଦବ କିଏ ? ଛିଇ ! ତୋମାନଙ୍କୁ ଟିକିଏ ଆଜ ନିଦ ଆସିଛି, ଗ୍ରାମର ହୁଳହୁଳ; ସେ ଟିକିଏ ଶୀତଳରେ ଶୋଇଲେ ପୁଣ ବଡ଼ ଭଲ ହବ ! (ଗ୍ରାମର ବ୍ୟଜନ ।)

ଶଶୀ—(ଦୀର୍ଘ ନିଶ୍ୱାସ ତ୍ୟାଗ କରି) ହିଁ ! (ଗ୍ରାମର ବ୍ୟଜନ ।)

ପଦ୍ମା—( ଧୀରସ୍ୱରେ ) ଆହା ! କିଏ—ଶଶୀ ?—ସଖି ? ଲକ୍ଷ୍ମୀଟି ମୋର ! ମୋର ପ୍ରାଣର ଭଉଣୀ ! ମୋର ଜୀବନର ସଖି ! ଆହା ! ସେହିପରି ପବନ କର—ବୁଢ଼ୀ ହୋଇ ସୁଖେ ସୁଖେ ବଞ୍ଚି ଥାଅ !

ଶଶୀ—ଭଉଣୀ ! ଆଉ ତୁମ ଦୁଃଖରେ ବଞ୍ଚି କି ହବ ? ତୁମ ସୁଖରେ ପିନା ଆମେ ସୁଖୀ, ତୁମେ ଯେବେ ସୁଖରେ ଥିବ ଆମେ ଗ୍ଭଚସ୍ତ୍ରଗ ବଞ୍ଚିବାକୁ ମନା କରିବୁଁ ନାହିଁ !

ପଦ୍ମା—ମନା ? ମୋ ମନର ମନ ! ବହି ତ ମୋତେ ଦୁଃଖ ବହୁଛି ! (ପୂର୍ବବତ୍ ନିଦ୍ରା ।)

[ ସରମାଳୀର ପ୍ରବେଶ ।

ସୂର୍ଯ୍ୟ—କଣେ ଯାଉ ଛୁଅଛେ ?

ସଭ—ମାତା ଆସିଚନ୍ତି ।

ସୂର୍ଯ୍ୟ—କଏ ଭଦ୍ରା ?—ଭଉଣି ! ଭଦ୍ରା ଆସିଚ, ଡାକବା ?

ପଦ୍ମା—ଭଦ୍ରା ?—ମୋର ପ୍ରାଣ !—ମାତାଙ୍କୁ ଡାକିଆଣ ।

ସୂର୍ଯ୍ୟ—ଯା, ଡାକଦେ । [ ସଭମାଳୀର ପ୍ରସ୍ଥାନ ।

ଶଶି—ସତ୍ୟ ଏକା ଭଦ୍ରାର ଗୋଟାଏ ସ୍ୱଗୁଣ—ଯେତେବଡ଼ ଦୁଃଖ ହଉ ତାର କଅଣ ମୋହନୀ ମାୟା ଅଛି କେଜାଣି !

ସୂର୍ଯ୍ୟ—ସତେ ଗୋ ମୋର କେତେକେତେବେଳେ ସେଇଆ ମନେ ପଡ଼େ ।
[ ବେହେଲ ଓ ମାଳୀ ହସ୍ତେ ଭଦ୍ରାର ପ୍ରବେଶ ।

ଶଶି—(ହସି ହସି) କି ଗୋ ମାତା ! ଆଜି ତ ବଡ଼ ହର୍ଷମୁଖୀ ?

ଭଦ୍ରା—(ହାତ ହଲାଇ ସୁର ଭଙ୍ଗୀ କମେ)

ସେତ ବନମାଳୀ, ନବୀନ ମାଳୀ, ବନଫୁଲରେ ଥାଏ;
କାହ୍ନି ମୟୂରଚୂଳ, କଦମ୍ବମୂଳ, ବଇଁଶୀ ବଜେଇ ଗାଏ ।
ତନ ଭଙ୍ଗୀ ଠାଣି, ହୃଦୟ ଜାଣି, ମନ ସ୍ୱେସଇ ଧରେ;
ଯେମନ ରାଧିକା ରାଣୀ, ପ୍ରେମ-ପଗଣୀ, କୁଞ୍ଜରେ କେଳି କରେ !!

ଶଶି—କଗୋ ?

ବଡ଼ ରସ ରସିଆ ମନ ଖୁସିଆ କଥା ବାହାର ପଡ଼େ ?

ସୂର୍ଯ୍ୟ—( ବ୍ୟଙ୍ଗ ହାସ୍ୟ )

କେଉଁ ଯୋଗୀନାଗର ରସସାଗର ମିଳିଥିବ ଭାଗ୍ୟ-ବଳେ !

ଶଶି—ହଇ ଗୋ, କଏ ସେ ନବୀନଯୋଗୀ ?

ଭଦ୍ରା—ଯେ ପ୍ରେମରେ ହୋଇଛୁ ବୈରୀ !

ଶଶି—( ଉଚ୍ଚହାସ୍ୟ ) ଆଉ ତୁମେ ?

ଭଦ୍ରା—ଅନାଇଁ ଅନାଇଁ ବସି ରହିଲିଣି ନ ଆଇଲେ କୁଞ୍ଜେ କାଳିଆ;
ମୋର ନବୀନ ପରାଣ କେତେ ବା ସହିବ
ତୋର ରୂପ ଚାହିଁ କାଳିଆ !

ଶଶୀ—ଭଲ ଭଲ—ତହୁଁ କଣ ହେଲା ?

ଭଦ୍ରା—ବୋଲେ
କେତେ ବେଶଭୂଷା କରିଥିଲି ଯୋଷା ନ ଆଇଲେ ବନମାଳିଆ;
ନଟବର ନାଗର ହଟର ଆଗର ଧୂର୍ତ୍ତ ସେ ମୋହନମାଳିଆ ।
କୁଞ୍ଜେ କୁଞ୍ଜ କରି ବସିଛୁ ନାଗରୀ କୃଷ୍ଣ ବୋଲି କଥା ଟାଳିଆ;
ବାହାପିଲା ହୋଇ ସବୁ ସଭାରେ, କଥାରେ ଭେଟେ କଟାଳିଆ ?
ନ ବାଜେ ବଇଁଶୀ ପୁହାଇଲା ନିଶି କାହିଁ ସେ ରହିଲେ ପାଳିଆ—
ଏତେ ଏତେ କଥା ଜଳରେ ପଡ଼ିଲା ଏବେ ସେ ଧୀନକପାଳିଆ !!
ମର୍ମେ ମରମେ ମରୁଛି ପରାଣ ଦହି ଯାଉଛି ସେ-ବାଳୀ—
ବାଘୁଣୀ ପବନେ ଭ୍ରମୁଛି ତା ମଥା, ଖସି ହେଲି ବେକ ମାଳୀ !
ଛିଣ୍ଡାଇ ଖୁଣ୍ଟାଇ ସବୁ ଫିଙ୍ଗି ଦେଇ ଭୂଇଁକି ଯାହିଁ ତ କାଢ଼ିଲି—
ବିକଳ ଜୀବନ ବିକଳେ ଜୀଇଁଛି ବାଇ ବାଇ କାହିଁ ବୁଲିଲି !!!

ଶଶୀ- ତହିଁ ହଉଛି ?

ଭଦ୍ରା—ବଡ଼ ମାନ କରି ରାଧିକା ସୁନ୍ଦରୀ ବସିଥିଲେ ଗୁମାନଭରେ;—
ତାଙ୍କୁ ଭୁଲାଇବ କିଏ ପରବତ ପରି ଝୁଙ୍କେ କି ପବନ-ବଳେ ?
ଆଇଲେ ମୋହନ ହୋଇଲେ ମଦନ ଆଉ ନାହିଁ କିଛି ଗତି;—
ଶ୍ରୀପାଦଯୁଗଳ ଶିଖିଚୂଳପର ରଖିଲେ, ରଖିଲେ ପ୍ରୀତି !

ସୂର୍ଯ୍ୟ—ସେ କଣ ସେଇଆ ହବ ?

ଭଦ୍ରା—ସେଇଆ ସେଇଆ—ଏବେ ମୁରଲୀଧରଙ୍କୁ ନେଇଆ ।—
(ପଦ୍ମାବତୀର ମସ୍ତକୋପରି ଉପବେଶନ କରି ଗୀତ ।)
ରାଗ ଶଙ୍କରାଭରଣ । ତାଳ ଝୁଲା ଓ ପହପଟ ।
ସଜନି ! ଛାଡ଼ ମାନ ମୋହନ ।
କି କଥା ପାଇଁକି ରୁଷୁ ମୋ ଧନ !

ତାହାଙ୍କ ପୋଡୁଛୁ ତନକୁ ମଥା ।
ଫାଟିଲ ପଦ୍ମ କ ଜନକଲତା । ୧ ।
ଶିଶିରବନ୍ଦୁ କି ଲୋଚନ-ବନ ।
ଝରୁଛୁ ଭଞ୍ଜେ ପଦ୍ମନୟନ । ୨ ।

ପଦ୍ମା—ମାତଃ ଭଦ୍ରେ ! ଏ ସନ୍ତାପିତ ପ୍ରାଣକୁ ଏବା ଭ୍ରମଣ ମୋହିନୀ ମାୟା—ଆଉ କେହି ତାକୁ ଶୀତଳ କରିପାରିବ ନାହିଁ ! ମାତଃ ! ଅଧୀନ ଜନଙ୍କେ ପୁନର୍ବାର କଷ୍ଟ ସ୍ୱୀକାର କରନ୍ତୁ ।

ଭଦ୍ରା – କଷ୍ଟ କଣ ? (ପ୍ରେହପୂର୍ଣ ଗୀତ) –

କହିଲେ ସ୍ୱର୍ଗରୁ ତୋଳିବ ଫୁଲ !
ବୈକୁଣ୍ଠଭଣ୍ଡାର କରିବ ଜୁଲ ! । ୩ ।
ଏ ତୋର ଦେହ ଏ ତୋର ପରାଣ ।
ତୋହର କାରଣ ଧନ୍ୟ ଜୀବନ । ୪ ।
ପଦ୍ମା ! ଆଜ କପାଳ ଅଛ ?

ପଦ୍ମା – ତା କାହିଁକ ପଚାରୁଚ ! ଏ – ସେ (ଚକ୍ଷୁମୁଦ୍ରିତା ।)

ଭଦ୍ରା – କହୁଲ ନାହିଁ ? କଛୁ ଭଲ ଜଣାଯାଉଚ ନା ?

ଶଶି – ଭଦ୍ରେ ! ଭଲ କଣ ? ଦଶାଟା ଦେଖୁ ନାହିଁ ଯେ, ସେ କ ଆଉ ସେ ଆଗ ପଦ୍ମାବତୀ ଅଛନ୍ତି ! !

ଭଦ୍ରା – ଆହା ! ସଖୀ ମୋର ଜଳ ଗଲଣି !—ଶଶି ! ରୂପସାଗର ଶୋଷିତ ନଆଁ —ବିଧାତା କଥାରେ ଫାଟିଛୁ ହୃଦୟ ! (ଦୀର୍ଘନିଶ୍ୱାସ ପ୍ରକ୍ଷେପ ଓ ହାତ ଧରି) ମୋର ଗୁଣବତୀ ଆହା ! ଏପରି ଦାରୁଣ କଷ୍ଟ କୋମଳ ପ୍ରାଣ କିପରି ସହୁଚ ! ଶାନ୍ତ ହୁଅ, ବିଧାତା ଯାହା କରିବେ ! ମନକୁ ମିଛରେ ଏତେ କଷ୍ଟ ଦେବାରେ କଛୁ ଫଳ ନାହିଁ । (ଗୀତ)

୯

ରାଗ—ତୋଡ଼ି ପରଜ । ଝମ୍ପତାଳ ।

ଅସ୍ତ୍ର ଧର ମୋର ପ୍ରାଣ ହେ ସଙ୍ଗିନୀ !

ତୋ ଦୁଃଖରେ ପିନ୍ଧା ହୃଦୟ ବଳନ

ରହୁ ନାହିଁ ଆଣ୍ଟ ଟାଣ ରେ । ଘୋଷା ।

୬ କେତେ କେତେ କଥା ସହୁଛ ଏ ଦେହ

କେ ଦେଇ ପାରିବ ସୀମା ।

ଏ କଥା ଅଟଇ ମୋଣ୍ଟାଇ ଦେବଇଁ

ମୋ କଥା ମନେ ଘେନମା ରେ । ୧ ।

କାଣେ ନାହିଁ ତୋର ସ୍ନେହ ସେ ମୋହନ

କାଣିଲେ ଛାଡ଼ି କି ପାରେ ?—

ଜଣାଇବ ତାକୁ ମନାଇବ ମନ

ଦେଖିବ କେତେ ସେ ବାରେ ରେ । ୨ ।

ପଦ୍ମା—ଆହା ଭଦ୍ରେ ! ଯୁଗେ ଯୁଗେ ତୁମର ଶ୍ରୀମୁଖ ଦେଖୁଥାଉଁ !—ସେହି କୋକିଳକଣ୍ଠ ଯୁଗେ ଯୁଗେ ଆମର କାନ ପବିତ୍ର କରୁ, ହୃଦୟ ଶୀତଳ କରୁ !

ଭଦ୍ରା—ପଦ୍ମା ! ଯୁଗେ ଯୁଗେ ତୁମର ପାଖେ ବସି ତୁମର ଗୁଣ ଗାୟନ କରୁଥିବ, ଅଧୀନାର ସର୍ବଦା ଏହି ବାଞ୍ଛା !—ସୁଧି, ସାଙ୍ଗ ତ ବନ୍ତ ଉତ୍ତର ହେଇ ବୁଥାଡ଼େ ଅଛତ ?

[ ବନମାଳୀର ପ୍ରବେଶ ।

କାହିଁ ଏଡ଼େ ବ୍ୟସ୍ତ ?

ବନ—ପାଟରାଣୀ ଡେମାଦେଇଙ୍କି ଡାକୁଚନ୍ତି ।

ଭଦ୍ରା—ସଖି, ଉଠ, ଡାକୁଚନ୍ତି !

ପଦ୍ମା—ଶଙ୍କି ! ଯିବାକୁ ହବ ?—ତ ଚାଲ । ( ଧୀରେ ଗାତ୍ରୋତ୍ଥାନ । )

ପଟକ୍ଷେପଣ ।

## ଦ୍ୱିତୀୟ ଦୃଶ୍ୟ । ସଭାଗୃହ ।

[ ରାଜା କଳେବରେଶ୍ୱର, ମନ୍ତ୍ରୀ ଧୀରପ୍ରଜ୍ଞ ଓ ସଭାସଦ୍‌ବର୍ଗ ଆସୀନ । ]

ରାଜା—ମନ୍ତ୍ରିନ୍ ! ଆଉ ବିଳମ୍ବ କରିବାର ପ୍ରୟୋଜନ ନାହିଁ । ଶୀଘ୍ର କାର୍ଯ୍ୟ ସମ୍ପନ୍ନ କର । ଯେତେ ଯେତେ ମାନ୍ୟଗଣ୍ୟ ରାଜା ଅଛନ୍ତି ସମସ୍ତଙ୍କ ନିକଟକୁ ନିମନ୍ତ୍ରଣପତ୍ର ପଠାଇବାକୁ ତ୍ରୁଟି ନ କରିବ ।

ମନ୍ତ୍ରୀ—ମହାରାଜ ! ସମସ୍ତ ଆଗରୁ ପ୍ରସ୍ତୁତ ହୋଇ ରହିଛି, ଆପଣଙ୍କ କେବଳ ଆଜ୍ଞାର ଅପେକ୍ଷା ଥିଲା । ତେବେ କେବଳ ଓଡ଼ିଶାରାଜାଙ୍କୁ ଛାଡ଼ି ଅନ୍ୟ ସମସ୍ତଙ୍କ ନିକଟକୁ ପଠାଇ ଦେଉଛୁଁ ?

ରାଜା—( ସକ୍ରୋଧରେ ) ସେ ଚଣ୍ଡାଳର ନାମ ଏ ପବିତ୍ରସ୍ଥାନରେ ଧରିବ ନାହିଁ—ଆମର ପଦ୍ମାବତୀ ଅସ୍ପୃଶ୍ୟ ବା ସ୍ଥାନମାନ ଲୁହାଇ ।

ମନ୍ତ୍ରୀ—ଯେ ଆଜ୍ଞା ମହିମା ! ସ୍ୱୟମ୍ବରର ଦିନ ଆଗତ ପୂର୍ଣ୍ଣିମୀ—ଆଜିଠାରୁ ଏକମାସ ପରେ ?

ରାଜା—ଆଜିଠାରୁ ଠିକ୍ ତିରିଶ ଦିନ ପରେ । ତୁମେ ଇତିମଧ୍ୟରେ ମଞ୍ଚ, ବେଦୀ ଓ ମଣ୍ଡପାଦି ସମସ୍ତ ନିର୍ମିତ କରିବା ନିମନ୍ତେ ସୂତ୍ରଧରଙ୍କୁ ଆଜ୍ଞା ଦିଅ, ଆଉ ଦେଖିବ ଯେପରି ନିରୂପିତ ଦିନର ଗୋଟିଏ ଦିନ ପୂର୍ବରୁ କୌଣସି କାର୍ଯ୍ୟ କରିବାକୁ ଅବଶେଷ ନ ଥାଏ ।—ନିରୂପିତ ଦିନକୁ ସମସ୍ତ ସୁସଜ୍ଜିତ ହୋଇ ରହିଥିବ ଶତକୋଟ ପଟ୍ଟନରେ ବହୁବିସ୍ତୀର୍ଣ୍ଣ ଶାଳାଗୃହମାନ ନିର୍ମାଣ କରାଇ ରଖ, ଆଉ ନାନାପ୍ରକାର ଅଗ୍ନିବାଣ ଓ ଆଲୋକ ଦ୍ରବ୍ୟାଦି ପ୍ରସ୍ତୁତ କରାଇ ରଖିବା ନିମନ୍ତେ କାରିଗରିଙ୍କୁ ଆଜ୍ଞା ଦିଅ । ନଗରରେ ଯେତିକି ଦ୍ରବ୍ୟ ଅଛି କ୍ରମେ କ୍ରମେ ସମସ୍ତ କ୍ରୟ କରି ନେଇ ନାଗରିକମାନଙ୍କୁ ନିର୍ଦ୍ଦିଷ୍ଟ ଦିନର ଅଷ୍ଟାହ ପୂର୍ବରୁ ଆମୋଦ ପ୍ରମୋଦରେ ରହିବା ନିମନ୍ତେ ଘୋଷଣା ପ୍ରଦାନ କର, ଅଧିକ ଦୀନ ଦୁଃଖିମାନଙ୍କୁ ଉପଯୁକ୍ତ ଗ୍ରାସାଚ୍ଛାଦନ ଦେବାର ସୁବିଧାନ କର ।

ମନ୍ତ୍ରୀ—ସମ୍ମୁରୁ ଯେ ଆଜ୍ଞା ।

[ ଦ୍ୱାରୀର ପ୍ରବେଶ ।

ଦ୍ୱାରୀ—( କରଯୋଡ଼େ ) ମହାରାଜ ! ଓଡ଼ିଶାର ଜଣେ ଦୂତ ଦ୍ୱାରଦେଶରେ ଶ୍ରୀମୁରୁ ଆଦେଶ ଅପେକ୍ଷା କରୁଛନ୍ତି ।

ରାଜା—(ସବିସ୍ମୟ) ଓଡ଼ିଶାର ଦୂତ ?

ଦ୍ୱାରୀ—ମହିମା, ଓଡ଼ିଶାର ଦୂତ ।

ରାଜା—ଆଜ୍ଞା ଦିଅ ।

[ ଦ୍ୱାରୀର ପ୍ରସ୍ଥାନ ।

ମନ୍ତ୍ରିନ୍, କିଛି ଅଭିପ୍ରାୟ ଅନୁମାନ କରି ପାରୁଛ ?

ମନ୍ତ୍ରୀ—ମହାରାଜ ! ବୋଧହୁଏ ଭଲ ଅଭିପ୍ରାୟ ନୁହେଁ ।

ଦୂତର ପ୍ରବେଶ ଓ ଜାନୁପାତ ସମ୍ଭ୍ରମ କରି
କୃତାଞ୍ଜଳିପୁଟରେ ଦଣ୍ଡାୟମାନ ।

ମନ୍ତ୍ରୀ—ତୁମ୍ଭର ନାମ ?

ଦୂତ—ମେଘବର୍ଣ୍ଣ ।

ମନ୍ତ୍ରୀ—ଆସିବାର ଅଭିପ୍ରାୟ ?

ଦୂତ—ଓଡ଼ିଶା ରାଜାଙ୍କ ଦୌତ୍ୟକାର୍ଯ୍ୟ ।

ରାଜା—ଓଡ଼ିଶା ରାଜା ସଙ୍ଗେ କାଞ୍ଚୀକାବେରୀର ରାଜାଙ୍କର କୌଣସି ସମ୍ପର୍କ ନାହିଁ । ପୁରୁଷୋତ୍ତମ ଦେବ ରାଜଗୃହରେ ଗୋପାଙ୍ଗଣୀ-ଗର୍ଭ-ସମ୍ଭୂତ । ତହିଁରେ ଆପଣାର ପଦର ଗୌରବ ବୁଝି ନ ପାରି ଅଜ୍ଞାନଙ୍କ ପରି ଚଣ୍ଡାଳର ଆଚରଣ କରେ—ଆଜି ସିଂହାସନରେ ବସିଚ ବୋଲି ତାହା ସହିତ କାଞ୍ଚୀରାଜା ସଖ୍ୟଭାବ ରଖିବା କଦାପି ପ୍ରସ୍ତୁତ ନାହାନ୍ତି ।

ଦୂତ—ମହାରାଜ ! ସେ ବୃକ୍ଷମୂଳରେ ଶ୍ରୀମୁରୁ ଅଗଣ୍ୟ କୁଠାର ପ୍ରହାର ହୋଇଛୁ; ବିଧାତା ପୁନର୍ବାର ତାହାକୁ ପୂର୍ବପରି ରଖିବାକୁ ଚେଷ୍ଟା

କଲେ ଅଗ ଗୋଟାଏ ଗୁମୂଳ କାଣ୍ଡ ଲଗିବ ! କାରଣ ଯାହାଦ୍ୱାରା ଆଘାତ ଘଟିତ ହୋଇଛି ସେ ଚଳିବେ ପଦ୍ମଙ୍କରେ ଦଣ୍ଡିତ ହେବେ ନାହିଁ, ନୋହିଲେ ଅଘାତ କଲେ କାହିଁକ ?

ରଜା—ଯେବେ ବୃକ୍ଷ ଅକର୍ମଣ୍ୟ ଓ କଣ୍ଟକକଣ୍ଟିଷ୍ଟ ହୋଇଥାଏ ତେବେ ତାହା ନଙ୍କେ ଆଘାତପ୍ରାପ୍ତ ହେବା ନମନ୍ତେ ମନରେ ପ୍ରବୃତ୍ତି ଜନ୍ମାଏ । ତୋର ରଜା ପଶୁ ଓ ତାହାର ବ୍ୟବହାର ପଶୁବୃତ୍ତିମୂଳକ ।

ଦୂତ—ଶ୍ରୀମୁଖ ଏପରି ଅନର୍ଥକ ନନ୍ଦା-ଉକ୍ତି ସଦ୍‌ଗୁଣର ଅଯଥା ବ୍ୟବହାର ପର ପ୍ରତ୍ୟକ୍ଷ ହେଉଛି ।

ରଜା—( ସରୋଷେ ) କଏ ଗୁହ୍ଯ ଦୂତ ?

ଏତେକ ଆସ୍ପର୍ଦ୍ଧା ତୋର ଏଥସ୍ଥଳେ ଆସି
ପ୍ରଥମରେ କଟୂତ୍ତର ଦେଉ ତୁ ସାହସି ?
ନ ଜାଣୁ ଏକ୍ଷଣି ତୋର ଘଟିବ କ ଦଶା—
ମାନବ ହସ୍ତରେ ଯେସନେ ପଡ଼ି'ଛୁ ତୁ ମଶା ?
ଇଚ୍ଛା ହେବ ବାର୍ତ୍ତା ଜଣ୍ଟ ଥାଏ କହିବାକୁ;
ସଭାର ମର୍ଯ୍ୟାଦା ରଖି କହିବୁ ତାହାକୁ ।

ଦୂତ—

ଶାନ୍ତ ହେବେ ମହାରାଜ ! ହୀନବୁଦ୍ଧି ଦୂତ
କର ନାହିଁ ଦୋଷ କଛୁ ଶ୍ରୀମୁଖ-ଶ୍ରୀପଦେ ।—
କହିବ ଏତେକ, ଯେବେ ନଥବେ ଶ୍ରୀମୁଖ
ଓଡ଼ିଶା ରଜାଙ୍କୁ, ତେବେ ଓଡ଼ିଶା ରଜାଙ୍କ
ଅଛ ଯେତେ ଭଲ ଭଲ ସଦ୍‌ଗୁଣନଚୟ,
ଅପବ୍ୟବହାର ତାର ହୁଅଇ ଏଠାରେ ।

ରଜା—ତାହ ଯଥେଷ୍ଟ ଦୋଷ—ଯଥେଷ୍ଟ ଅପମାନ । ଆମେ ଏଠାର ରଜା ବୋଲ ତୋର ବୋଧହୁଏ ଅବଧି ପ୍ରତୀତ ହୋଇନାହିଁ, ଏହ ହେତୁରୁ ଆମର ବୁଦ୍ଧିର କଳନା ଏହିପରି ନକୃଷ୍ଟଭାବରେ ହେଲା ଯେ ଆମେ ଭଲ ଗୁଣ ବୁଝି ନ ପାରି ତାର ଅସଦ୍‌ବ୍ୟବହାର କରୁଛୁ ?

ରୁ ଆମ୍ଭକୁ ବ୍ୟବହାର ଶିଖାଇବା ପାଇଁ ଆସିଛୁ ? ତୋତେ ଶୀଘ୍ର ଏଥିର ପ୍ରତିଫଳ ଭୋଗ କରିବାକୁ ହେବ । ଭଲ କହ ଯା ଯାହା କହିବାର ଅଛୁ—ତୋତେ ତେତେବେଳଯାଏ ଛାମୁରୁ ଅବସର ଦିଆ ଗଲା ।

ଦୂତ—( ସ୍ୱଗତ ) ଏ ରାଜା ନିତାନ୍ତ ହିତ—ନୋହିଲେ କି ଜଗନ୍ନାଥଙ୍କୁ ନିନ୍ଦା କରିଥାନ୍ତା ? ଏତ ମୋତେ ନିଶ୍ଚେ ବଧ କରିବ, ଜୀବନ ନାହିଁ ଦେଖୁଛି; ଆଉ ମିଛ ତ ଖଟିବ ନାହିଁ, ତେବେ ସ୍ପଷ୍ଟ କହିବାକୁ ଛାଡ଼ିବା କାହିଁକି ? ( ପ୍ରକାଶ୍ୟ ) ମହାରାଜ ! ଯେବେ ପୂର୍ବ ଭାବର ବଶବର୍ତ୍ତୀ ହୋଇ ଅନ୍ୟାୟ ବୁଝିବାକୁ ପ୍ରସ୍ତୁତ ଥିବେ, ତେବେ ତହିଁକି ମଧ୍ୟ ଅଧୀନ ପୂର୍ବରୁ ପ୍ରସ୍ତୁତ ଅଛୁ । ଯେତେବେଳେ ଦୌତ୍ୟ କାର୍ଯ୍ୟର ଭାର ଗ୍ରହଣ କରିଛୁ ତେତେବେଳେ ଏହା ଅନୁମାନ କରିଛୁ ଆଉ ଏହା ଦୂତମାନଙ୍କର ସ୍ୱଭାବ ।—

ଦୂତ ରାଜାଙ୍କର ମୁଖ, ସେମାନଙ୍କ ଯାନ—
ଦୂତ ପ୍ରତି ବ୍ୟବହାର ପ୍ରବର୍ତ୍ତେ ରାଜ କ୍ରି ।
ପ୍ରଭୁର ଯେ ଆଜ୍ଞା ହେବ ଶିରୋଧାର୍ଯ୍ୟ ତାହା—
ତହିଁକି ପ୍ରସ୍ତୁତ ସଦା ରହିଥାନ୍ତି ଦୂତେ ।
ଏହୁ କ୍ଷୁଦ୍ର ବୁଦ୍ଧି—ପ୍ରଭୁ ରାଜରାଜେଶ୍ୱର,
ପ୍ରଭୁରୁ ବଳର ହେଉ କେଉଁ ନୀତି-ବଳେ
ଚଣ୍ଡାଳ ବୋଇଲେ ପ୍ରଭୁ ଓଡ଼ିଶା ରାଜାଙ୍କୁ ?
ଧନେ ଜନେ ପ୍ରାଣେ ମାନେ ନୁହନ୍ତି ସାମାନ୍ୟ
ଓଡ଼ିଶାର ରାଜା;—ଏତେ ଭାଗ୍ୟବାନ ଭବେ,
ଯଥାରକରତା ପ୍ରଭୁ ସଦାନନ୍ଦେ ବସି
ପାଆନ୍ତି ଶ୍ରୀହସ୍ତରୁ ସେବା ଭକ୍ତ ସୁଖେ !
ତ୍ରିପିଣ୍ଡ ଲୋକରେ, ଯେହ୍ନେ ମହତ ଲୋକର
ସେବା କରେ ପଦ, ଯେହ୍ନେ ମହତ ଅଟଇ;—
ମହତ କୁସୁମ ବିନା ପାଏ ଦେବପଦ ?

ସମସ୍ତଙ୍କ ଭାଗ୍ୟେ ଯେବେ ଘଟିଥାନ୍ତା ସବୁ,
ପ୍ରଭେଦ ଲୋକରେ ତେବେ ସାନ ବଡ଼ ବୋଲି
ରହିଥାନ୍ତା କମା ? ବଡ଼ ଓଡ଼ିଶା ରାଜନ —
ଭାଗ୍ୟବଳେ ପାଇଛନ୍ତି ବଡ଼ ଅଧିକାର;—
ଅଧିକାର ତାହା, ନୁହେ ସାମାନ୍ୟ ବିଷୟ !
ଚଣ୍ଡାଳର କାର୍ଯ୍ୟ ଯାହା ବୋଲୁଛନ୍ତି ତୁମ୍ଭ,
ଚଣ୍ଡାଳର କାର୍ଯ୍ୟ ତାହା ମାନୁଛୁ ଅଧୀନ;—
ମାତ୍ର ତୁମ୍ଭ ଆଜ୍ଞା ହେଉ ତାହାର କାରଣ ।—
ଅଧିକାର ଅଟେ ତାହା, ନୁହଇ ସାମାନ୍ୟ—
ବିନୟ ଗୁଣରୁ ତାର ମହତ୍ତ୍ୱ ବର୍ଦ୍ଧନ ।
ପ୍ରମତ୍ତ ବିଷୟ-ମଦେ ଯେ ଲୋକ ଏ ଭବେ,
ବିଷୟଦାବାଗ୍ନି ଯାର ଦହୁଛି ହୃଦୟ,
ବଡ଼ବୋଲି ଆପଣାକୁ କରେ ସେ ଗରବ;
ଜ୍ଞାନର ତରଙ୍ଗ ଧୀର ଖେଳେ ଯା' ଅନ୍ତରେ,
ଆଦେ ଲଭି ମହାନନ୍ଦେ ଯାର ଜ୍ଞାନାର୍ଣ୍ଣବ
ପ୍ରଶାନ୍ତ ସାଗର ଯେହ୍ନେ, ଆପଣାକୁ ସେହ
ମନୁଷ୍ୟ ସମାଜେ ମଣେ କ୍ଷୁଦ୍ର କୀଟ ପର;
କ୍ଷୁଦ୍ର କୀଟଠାରୁ କ୍ଷୁଦ୍ର ତେବେ ସେ ଅଟଇ
ବିଶ୍ୱପ.ଦ ପାଶେ— ଏହା ଅମତ ବିଧାନ ।
ହୁଅନ୍ତି ଯେବେ ସେ ଜନ ଇଷ୍ଟ ପ୍ରଭୁଠାରେ
ଚଣ୍ଡାଳରୁ ହୀନ, କାହିଁ ଲଜ୍ଜା ତେବେ କସ ?—
ବିନୟ କାରଣ ଯେବେ ଲଜ୍ଜା କାହୁଁ ହେବ ?—
ଅବନତ ଫଳଭରେ ସହକାର ତରୁ
ଦିଶେ କି ସୁନ୍ଦର ! ବନ୍ଧ୍ୟା ବୃକ୍ଷ କି ତେହ୍ନିକ ?
ମଦଛନ୍ନ ଅନୁର୍ବରମସ୍କାଗତ ଲୋକ
ଭ୍ରମଇ ପାଗଳ ପରି-ଶିକ୍ଷା ଦିଏ ଲୋକେ,

ଶୃଗାଳ ଲାଙ୍ଗୁଳ-ସ୍ନାନ ଯେବନ୍ତେ ଶିଖାଇଲା—
ଫିଙ୍ଗି ଦିଅ ଲଜ୍ଜା, ତାହା କଷ୍ଟର କାରଣ,
ଦଉଡ଼ିବା ପକ୍ଷେ ବଡ଼ ବ୍ୟାଘାତ ଘଟାଏ !
ଗୁଣୀ ଗୁଣ ଘେନ ପାରେ, ନୈସ୍ୱାସ୍ଥିକ ଘଟ;—
ଖାଉଥିଲେ ସ୍ୱାଦୁ ସିନା କହେ କେ ତା ସ୍ୱାଦ ?
ଯହିଁ ନଦୀ ତହିଁ ଲୋକେ ଜାଣନ୍ତି ତା କଥା;—
ମରୁଭୂମିବାସୀ କେଷ୍ଟ ଦେଖିବ ତା ପଥ,
କହିବ ତା ଅସୁନ୍ଦର ଅଟଇ ଦେଶକୁ !
ସଂସାର-କରତା ପ୍ରଭୁ ଜଗନ୍ନାଥ ଦେବେ
ଅବହେଳା କଲ ହେଲେ କହୁଛନ୍ତି ଛାମୁ
ଚଣ୍ଡାଳ ବୋଲି, ଯା ମୁଖେ ନ ଆସେ ଚଣ୍ଡାଳ !
କରନ୍ତୁ କଣବେ ସବ ପ୍ରାୟଶ୍ଚିତ୍ତ ତାର
ଅତରେ ଭକତସଙ୍ଗ; ପଡ଼ନ୍ତୁ ହୋ ଯାଇ
ଜଗନ୍ନାଥ-ପାଦପଦ୍ମେ ଦୃଢ଼ କରି ମନ;
ମାଗନ୍ତୁ ସହସ୍ରକୋଟି କ୍ଷମା ସେହି ପଦେ;
ତେବେ ସେ ସକଲ ଦୋଷ ହୋଇବ କ୍ଷାଳିତ ।—
ନୋହିଲେ ଅଛି ଯେ ବାର୍ତ୍ତା ଦୂତମୁଖେ, ତାହା
ଫଳିବ ଅବଶ୍ୟ; ଯେଉଁ ପ୍ରତିଜ୍ଞା ହୋଇଛି
ପର୍ବତଁ ଅଟଳ;—ପ୍ରଭୁ ଅଗଣ୍ୟ ସେନାରେ
ଆସୁଛନ୍ତି ପଛେ; କନ୍ୟା ନ ଦେଇ ଆପଣା
ବୋଇଲେ ଚଣ୍ଡାଳ;—ସେହି ଘୋର ଅପମାନ
ପ୍ରତିଶୋଧ ନେ, ଜୟ କରି କାଞ୍ଚି ଦେଶ
କରିବେ ଚଣ୍ଡାଳୁଁ ସ୍ନାନ ଛାମୁଙ୍କୁ ମୋ ପ୍ରଭୁ—
ଚଣ୍ଡାଳ ହସ୍ତରେ ନିକ୍ଷେପିବେ ପଦ୍ମାବତୀ ।

ରାଜା—ଚଣ୍ଡାଳ-! ନରାଧମ ! ତୋର ଏତେଦୂର ଅହଙ୍କାର ଯେ ଯାହା ଇଚ୍ଛା ତାହା କହିବାରେ ଅଣୁମାତ୍ର ଲଜ୍ଜିତ ହେଲୁ ନାହିଁ ? ଜାଣୁ

ନା କାଞ୍ଚିରାଜା ତୋପରି ସହସ୍ର ଲୋକ ମସ୍ତକରେ ପଦାଘାତ କରିପାରନ୍ତି ? ତୁହି ଆପଣାର ପ୍ରଭୁର ମହାଚରଣରେ ଆପଣାକୁ କୃପାହସୀ କରିଛୁ ? ରେ ଯମକିଙ୍କରର ପିଶାଚଦାସ !—ମନ୍ତ୍ରିନ୍ ! ଏହାକୁ ବନ୍ଦ କର ଛମୁ ତୋତେ ଯାହା ବଧ ନ କରି ଜୀବନରେ ରଖିଲେ ତୁହି ତାହାକୁ ବଡ଼ କରି ଘେନ ଥା ।

ଦୂତ—ଅତି ନାହିଁ ମହିମା ! ଏ ଜୀବନ ଆଜୀବନ ଦୌତ୍ୟ କାର୍ଯ୍ୟରେ ନିଯୁକ୍ତ ଅଛି ଏବଂ ସ୍ଥାନବିଶେଷରେ ଏପରି ଫଳ ମଧ୍ୟ ଭୋଗ କରିବାକୁ କୁଣ୍ଠିତ ନୁହେ । କିନ୍ତୁ ଅଚିରେ ଫଳ ଫଳିବ ।

ରାଜା—ତୁନିହୋ । ମନ୍ତ୍ରିନ୍ ! ଶୀଘ୍ର ଏହାକୁ ବନ୍ଧ କରି ପଠାଇଦିଅ ।

ମନ୍ତ୍ରୀ—( କରଯୋଡ଼େ ) ମହାରାଜ ! ଅଧୀନର କିଛି କହିବାର ଅଛି । ଏ ଛାର କ୍ଷୁଦ୍ର ଜୀବ ଦୂତ—ଏହାକୁ ବନ୍ଧ କରି କି ହେବ ? ତୁଚ୍ଛନର ମାରି ହାତ ନଷ୍ଟ କରିବା ମାତ୍ର—

ଖୋଜି ବୁଲେ ବ୍ୟାଧ ବନେ ମୃଗ ପଶୁଜୀବ
ଯହିଁରେ ପୂରିବ ପେଟ ରହିଥିବ ମାନ;—
କିନ୍ତୁ କେ କହନ୍ତୁ କେଉଁ ଗର୍ତ୍ତମୂଳେ ଛପି
ବସିଛି ଶୃଗାଳ ନିଜ ଉଦର ପୂରାଇ,
ଖୋଜୁଥାଏ ବନେ ? କେବେ ସିଂହ କି ଖୋଜଇ
ନାଶିବାକୁ ମହାବନେ ନିକୃଷ୍ଟ ମୂଷିକ ?
ସମାନେ ସମାନେ ସିନା ଟେକେ ରହେ ମାନ ?
ଆସୁ ଓଡ଼ରାଜା, ନିଜେ ଦେଖିବ ପ୍ରତାପ—
ଦୋର୍ଦ୍ଦଣ୍ଡ ମାର୍ତ୍ତଣ୍ଡ-ତାପେ ପଳାଇବ ପ୍ରାଣେ,
ମାନେ ଅପମାନି, ଗର୍ବ ମର୍ମ ବିଦ୍ଧ ହୋଇ,
ନରକେ ପଡ଼ିତ ଯେମନ୍ତେ, ଫେରିବ ସେ ଆପେ;—
କ୍ଷୁଦ୍ର ପ୍ରାଣେ ବଳବ୍ୟକ୍ତ ମହତ୍ତ୍ୱ-ଖର୍ବକୁ ।

ରାଜା—(ସରୋଷେ) ଚୁପ ହୋଇଥାଅ । ଆଜ୍ଞା ଅମାନ୍ୟ କରିବାରେ ଟିକିଏ ସୁଦ୍ଧା ସଙ୍କୁଚିତ ହେଉ ନାହିଁ ?

ଉତ୍କଳର ଏତେ, ଉଦ୍ଧ ଦୂତର କଥାରେ ?
ନବୋଧ ଏମନ, ଠିକେ ବୁଝୁନାହିଁ କିଛୁ—
ସଭା ମଧ୍ୟେ ଅପମାନ କି ହେଲା ଆମ୍ଭର ?
ବନ୍ଧିବାକୁ ଇଚ୍ଛା ଯେବେ, ବନ୍ଦୀ କର ଦୂତେ—
ବାନ୍ଧି ହସ୍ତପଦ ଶୀଘ୍ରେ କାରାଗାରେ ଦିଅ,
ନୋହିଲେ ଯାଉଛି ଖଡ୍‌ଗ ଶାଣିତ ମସ୍ତକ ।

ମନ୍ତ୍ରୀ—ଯଥାଆଜ୍ଞା ମହିମା !—ଦ୍ୱାରୀ—

ନେପଥ୍ୟେ—ଅବଧାନ !

[ ଦ୍ୱାରୀର ପ୍ରବେଶ ।

ମନ୍ତ୍ରୀ—ଏହାଙ୍କୁ ଦୃଢ଼ ବନ୍ଧନ କରି କାରାଧ୍ୟକ୍ଷଙ୍କଠାରେ ଅର୍ପଣ କର—ଅନ୍ୟ ଆଦେଶ ନ ହେବା ପର୍ଯ୍ୟନ୍ତ ଏ ବନ୍ଦୀ ଥିବ ।

ଦ୍ୱାରୀ—ଯେ ଆଜ୍ଞା ! [ ଦୂତଙ୍କୁ ବନ୍ଧନ କରି ତତ୍ସହ ପ୍ରସ୍ଥାନ ।

ରାଜା—ମନ୍ତ୍ରିନ୍ ! ଏବେ ଅନ୍ୟ ସମସ୍ତ କାର୍ଯ୍ୟ ବର୍ତ୍ତମାନ ସମନ୍ତେ ସ୍ଥଗିତ ରଖ—ସେନାପତିଙ୍କି ଆଜ୍ଞା ଦିଅ ଅତିଶୀଘ୍ର ଯୁଦ୍ଧର ସମସ୍ତ ଆୟୋଜନ କରି ଦୁଇଦିନ ମଧ୍ୟରେ ପ୍ରସ୍ତୁତ ରହିଥିବେ । ତୁମ ପ୍ରତି ଏଥିର ସମ୍ପୂର୍ଣ୍ଣ ଭାର ଅର୍ପିତ ହେଲା—କୌଣସି ବିଷୟରେ ଯେପରି କିଞ୍ଚିନ୍ମାତ୍ର ଅବହେଳା ନ ହୁଏ, ବର୍ତ୍ତମାନ ସଭାଭଙ୍ଗ କର ।

ପଟକ୍ଷେପଣ ।

---

ତୃତୀୟ ଦୃଶ୍ୟ । ଅନ୍ତଃପୁର-ଶୟନାଗାର

[ ରାଣୀ ବିଦ୍ୟୁଲ୍ଲତା ପଲ୍ୟଙ୍କୋପରି ଆସୀନା । ସମ୍ମୁଖେ ପଦ୍ମାବତୀ ଅଧୋବଦନେ ଦଣ୍ଡାୟମାନା । ]

ରାଣୀ— ମା ଯେଉଁ କଥା କହିବ ବୋଲି ତତେ ପାଖେ ଡକେଇବାର ଲେଖି ନାହିଁ—ତୁ ଆଉରି ମୋ କଥା ଟାଳ ଦେଉଛୁ ? ମୁଁ ଦେଖୁଚି ଅନେକ ଆଗେ କ୍ଷେତରୁ ଫେରି ଉଠିଲା ଦିନରୁ ତୋ ମୁହଁରେ ହସ ନାହିଁ—ଦିନକୁ ଦିନ କାଠିପଣ ହୋଇ ଯାଉଚୁ; ଦେହରଙ୍ଗ କାଳୀ ପଡ଼ିଗଲାଣି, ଛାତିରେ ସବୁ ଶିରା ପଡ଼ି ଉଠୁଚି; ପଞ୍ଜରାର ହାଡ଼ କେଇଟା ଗଣି ହେଉଛି ! କାହିଁକି ?—ତୁ କହୁଚୁ କଣ ନା ମୁଁ ବାହା ହେବି ନାହିଁ,—ତୋର କଣ ବାହା ହେବାର ବୟସ ହୋଇନାହିଁ ନା କଣ ? ତୋ ମନରେ ଯେବେ କିଛି ଅଛି ତ କହୁନାଉଁ କାହିଁକି ? ସ୍ୱେ ସାରା ଦୃଷ୍ଟିର ବଇଦପଣ ଫାଟି ଫୁଟି ଗଲେଣି, ତୋର ଯେଉଁ ହାଲଥାକୁ ସେହି ହାଲଥା ! କହ ତୋର କେଉଁ ରାଜାକୁ ବା ହେବାର ମନ ଅଛି ? ଲକ୍ଷ୍ମୀଟି ମୋର କହ, ମୁଁ ସେହି ରାଜା ସଙ୍ଗେ ତୋତେ ବାହା ଦେବି; କହିଲୁ ମୋ ଧନ ।

ପଦ୍ମା— ( ସ୍ୱଗତ ) ହା ବିଧାତଃ ! ଯେବେ ଏତେ ସହଜ ହୋଇଥାନ୍ତା ତେବେ ଆଉ ଅଭାଗିନୀର କଷ୍ଟ କି ଥିଲା ? (ପ୍ରକାଶ୍ୟେ) ମା ! ମୋର ଏହିକ୍ଷଣି ବା ହବା ପାଇଁ ମନ ନାହିଁ—ଆପଣ କାହିଁକି ତୁଛେଇଁ ମୋ ପାଇଁ ଯାଣ୍ଡି ହଉଚନ୍ତି ?

ରାଣୀ— କଅଣ, ତୁ ପୁଣି ସେହିକ କଥା କହୁଚୁ ? ମନର ବ୍ୟାଧିରେ ତୋର ଦେହ ଏତେ କଷ୍ଟ ପାଉଚି, ସ୍ୱା କି ସଦାକାଳ ମୋଠି ଛପା ହୋଇଥିବ ? କଏ କହୁଥିଲା ତୁ ଓଡ଼ିଶା ରାଜା ଛଡ଼ା ଆଉ କାହାରିକି ବାହା ହବୁ ନାହିଁ, ସ୍ୱା କେଉଁଠିର କଥା ?—ମା ବାପାଠୁଁ କଣ ତୋର ବୁଦ୍ଧି ବଳିଲା ? ଓଡ଼ିଶା ରାଜାଟାର ଏମନ୍ତ କି ଗୁଣ କି ରୂପ ଅଛି

ଯେ ତୋ ପରି ଚନ୍ଦ୍ରମା ତାକୁ ପ୍ରାପ୍ତି ହେବ ? ତୋତେ ତ ଜନ୍ମ ବଳି ବଡ଼ ବଡ଼ ରାଜାଏ ଯୋଷୁଛନ୍ତି; ତୁ ସେ ଗ୍ରହକୁ ବା ହରୁ ? ଯେ ଲକ୍ଷ ଲକ୍ଷ ଲୋକ ଅଗରେ ହାଡ଼ୀକାମ କରେ, ତୋ ପରି ଗୁଣବନ୍ତୀ ସେ ହାଡ଼ୀ ହାତ ଧରିବ ?

ପଦ୍ମା—ମା, ମୋ କଥା ମୋ ଠୁଁ ଶୁଣି ମୋତେ କହୁବେ; ଆଜ୍ଞା ଜଣେ କେହ୍ନ ଆସି ମୋ ନାଁରେ ପାଞ୍ଚ କଥା ଲଗେଇ କହୁବ ତାକୁ ଆପଣ ଯେମା କରୁଚନ୍ତି କାହିଁକି ? ମୋର ତ ବା ହବା ପାଇଁ ମନ ନାହିଁ ଆପଣ ଭୁଲିଲେଇ ଆଜ୍ଞା ଜଣକୁ କାହିଁକି କହୁଚନ୍ତି ?

[ ହଠାତ୍ ରାଜାଙ୍କର ପ୍ରବେଶ ।

ରାଣୀ—ସସମ୍ଭ୍ରମେ ଉଠି ପଲଙ୍କ ତଳେ ପଲଙ୍କକୁ ଆଉଜି ଦଣ୍ଡାୟମାନା । )

ରାଜା—ପ୍ରିୟେ ! କି କଥାବାର୍ତ୍ତାର ପ୍ରସଙ୍ଗ ପଡ଼ିଚି ?

ରାଣୀ—ପଦ୍ମାକୁ ଯେତେ ବୁଝେଇଲେ ସେ କହୁଚି ମୋର ତ ବାହା ହବା ପାଇଁ ମନ ନାହିଁ ଆପଣ କାହିଁକି ରାଜାମାନଙ୍କୁ ସବୁ ନିମନ୍ତ୍ରଣ କରୁଚନ୍ତି ? ସେ ବାଳ୍ୟାଣୀଟାକି କଟା କଅଣ ଯେମନ୍ତି, ସବୁଛ ବେଳେ ତାର କଣ ମନ କେଜାଣି ?—ସବୁ ରାଜାଙ୍କ ନିମନ୍ତ୍ରଣ ହେଲା ?

ପଦ୍ମା—( ସ୍ୱଗତ ) ହା ବିଧାତଃ ! ମୋତେ କି ସତେ ଦୋସ୍ୱରୁଣୀ ହେବାକୁ ହବ ? ପ୍ରଭୁ, ସେହ୍ନ ପଦେ ଅଧୀନର—ଅଭାଗିନୀର—ସବିସ୍ତ ବିନୟ ନିବେଦନ, ଅଧୀନୀକୁ ରକ୍ଷା କରନ୍ତୁ ।

ରାଜା—(କ୍ଷଣକାଳ ଚିନ୍ତାନ୍ୱିତ ଥାଇ) ନା ।

ପଦ୍ମା—( ପ୍ରକାଶ ) ମନ ଅସ୍ଥିର ହୋ—ଆଜ୍ଞା ଭସ୍ମ ନାହିଁ, ଏତେବେଳଯାଏ ନିରଣ ହେବାର କାରଣ ହୋଇ ନାହିଁ ।

ରାଣୀ—କାହିଁକି ? ତୁମକୁ ଚିନ୍ତିତ କାହିଁକି ଦିଶୁଚି ?

ରାଜା—ନା ଚିନ୍ତିତ କଅଣ ? ଅଳ୍ପ ସେହ୍ନ କଥାବାର୍ତ୍ତା ପଡ଼ିଥିଲା, ପୁଣି ଇତିମଧ୍ୟରେ ଗୋଟାଏ ଗୋଳମାଳ ଉପସ୍ଥିତ ହେଲାଣି ।

ରାଣୀ—(ସନ୍ତ୍ରସ୍ତସ୍ୱରରେ) କି ଗୋଳମାଳ ? ଗୋଳମାଳ କଅଣ ?

ରାଜା—ଓଡ଼ିଶା ରାଜା ଲଢ଼େଇ କରିବାପାଇଁ ଆସୁଛି ।

ରାଣୀ—( ସଭୟେ ) ଲଢ଼େଇ କରିବାପାଇଁ ଆସୁଛି ! କାହିଁକି ? କି କରାଯିବ ?

ପଦ୍ମା—( ସ୍ୱଗତ ) ହା ବିଧାତଃ ! ପ୍ରାଣେଶ୍ୱରଙ୍କୁ ମୋର ଏଥିପାଇଁ ଯୁଦ୍ଧ କରିବାକୁ ହେଲା ? ପ୍ରାଣେଶ୍ୱର ! ତେବେ ବର୍ତ୍ତମାନ ବୁଝିଲି ଆପଣ ଅଧୀନୀକୁ ଏକାନ୍ତ ବିସ୍ମୃତ ହୋଇ ନାହାନ୍ତି ! ମାତ୍ର ଅଧୀନୀ ପାଦପଦ୍ମରେ ନିବେଦନ କରୁଛି, ପିତାମାତାଙ୍କର ଯେପରି କୌଣସି ଅନିଷ୍ଟ ନ ହୁଏ !

ରାଜା—ଆମେ ତାକୁ ଚଣ୍ଡାଳ ବୋଲି କହି ଆସି ନ ଥିଲୁଁ ? ସେ ତାର ପାଇଁ ଆସୁଛି ଯେ ମୋତେ ଚଣ୍ଡାଳଙ୍କ ହୀନ କରି, ଆମେ ତ ତାକୁ ପଦ୍ମାକୁ ଦେଇ ନାହୁଁ, ପ୍ରତିଜ୍ଞା କରିଛି, ପଦ୍ମାକୁ ଚଣ୍ଡାଳ ହାତରେ ପକେଇବ ! ତାର ଏତେ ଆସ୍ପର୍ଦ୍ଧା !

ରାଣୀ—( ସଭୟେ ଜିହ୍ୱା ଦଂଶନ କରି ) କଅଣ ?

ରାଜା—ପ୍ରିୟେ ! ଡରୁଛ କାହିଁକି ? ସେଇଟା ଆମର କଣ କରିବ ? ଯେମନ୍ତ ଗର୍ବ କରି ଆସୁଛି ତେମନ୍ତ ଲଜ୍ଜା ପାଇ ଯିବ ।

ରାଣୀ—ଏ ସମ୍ବାଦ ଦେଲା କିଏ ?

ରାଜା—ଦୂତ ଆସିଥିଲା ।

ରାଣୀ—ସେ ଅଛି କେଉଁଠି ?

ରାଜା—ବନ୍ଦୀଶାଳାରେ । ବହୁତ କଟୁକଥା କହିଲା, ତାକୁ ତାର ପାଇଁ ବନ୍ଦୀ କରି ରଖିଛୁଁ ।

ରାଣୀ—( ବିକଳ ସ୍ୱରେ ) ମୋର ତ ମନ କେମିତି ହେଉଛି ! (ସସ୍ନେହେ ପଦ୍ମାବତୀକୁ କୋଳକୁ ଆଉଜାଇ ମୁଖ ଚୁମ୍ବନ କରି) ହା ! ବିଧାତା ମୋତେ ଉଦ୍ଧାର କର, ଯେମନ୍ତ ଏଥିରେ କୁଳକଳଙ୍କ ନ ଆସୁ !

ପଦ୍ମା—( ଅଶ୍ରୁ ମୋଚନ ଓ ପ୍ରଗତ ) ବିଧାତଃ ! ତୋର ଯଥାରୁଚି ! ଅଧୀନାର ଅନ୍ୟ ଆଶ୍ରୟ ନାହିଁ !

ରାଣୀ—(ଅଞ୍ଚଳରେ ନିଜର ଓ ପଦ୍ମାବତୀର ଅଶ୍ରୁ ପୋଛିବା ।)

ରାଜା—ଦେଖ, ତୁମେ ଅସ୍ଥିର ହେବାରୁ ପଦ୍ମାର ବିଶେଷ କଷ୍ଟ ହେଉଛି ! ସେ ହାତ ଗ୍ରହଣରେ ତାକୁ ଆଉ ଏପରି ଝଲେଇବାର ଉଚିତ ନୁହେଁ । ସ୍ଥିର ହୁଅ, ପଦ୍ମାର ଟିକିଏ କଷ୍ଟ ହେଲେ ମୋର ମନ ବଡ଼ ଘାଣ୍ଟି ହୁଏ ! ତୁମେ ଆଉ ତାକୁ ଏତେ କନ୍ଦାଅ ନା, ନିଜେ ବି ଏମନ୍ତ ଅସ୍ଥିର ହୋଇ କାନ୍ଦ ନା !—ପଦ୍ମା, ବୁଝିଲୁ ଭଲ ହୋଇ କାନ୍ଦ'ନ୍ତୁ ? ମା ମୋର, ତୁନି ହୋ !!

ରାଣୀ—( ଅଶ୍ରୁ ମୋଚନ କରୁ କରୁ ) ଆହା ! ତୁ ମୋର ଦୁଃଖିନୀର ସମ୍ବଳ—ମୋର ଅନ୍ଧନଡ଼ି ! ତୋ ପାଇଁ କେତେ କଷ୍ଟ ସହିଲିଣି ! ଯେବେ ସୁଖରେ ବଞ୍ଚିଥିବୁ, ତେବେ ସବୁ କଥା ତୋତେ ମନଫିଟେଇ କହି ଦୁହେଁଯାକ କାନ୍ଦୁଥିବା ! ଦଶ ମାସ ପେଟରେ ଧଇଲି ବୋଲୁଁ ମୋର ଏ ପ୍ରାଣ ପ୍ରାଣପଣ ନାହିଁ । ବିଧାତା !!! (ଅଶ୍ରୁ ତ୍ୟାଗ ।)

ରାଜା—ଦେଖ ତୁମେ ଆଉ ଏପଣ ହେଲେ ଚଳିବ ନାହିଁ – ବର୍ତ୍ତମାନ ଗଣଦେବଙ୍କର ଅର୍ଚ୍ଚନା କର ସେ ସବୁ ଦୁଃଖ ମେଣ୍ଟି ଦେବେ । ଆଉ ଓଡ଼ଶା ରାଜାଙ୍କୁ ଡର ?—

ନେପଥ୍ୟେ – (ବେହେଲର ସ୍ୱର ସହିତ ଗୀତ)

ରାଗ ଭଟିଆରୀ—ଏକତାଳୀ ।

ଆହା ପ୍ରାଣସେଖି ଗୁହେବତ ! ତାଳ ଅଛୁ ମନ କାହା ପ୍ରତ !
କେତେ କେତେ ଦୁଃଖ ମୁଣ୍ଡିଚନ୍ଦ୍ରମୁଖ ଶୁଖାଇ ଦହୁଚ ସୁଖ-ମତ !
ଆରେ ଜୀବଧନ ! ତୋର ସୁଖେ ସିନା ସ୍ୱର୍ଗ ସୁଖାର୍ଜନ । ୧ ।

ରାଜା – ଏ ଭଦ୍ରା ଆସୁଚ ପରା ?

ରାଣୀ—ନୋହିଲେ ଆଜ ଏ ରାଇଜରେ ଏଡ଼େ ବାସ୍ୟାଣୀ କିଏ ଅଛି ? — ତାର ଯେମନ୍ତ ସବୁବେଳେ ଆନନ୍ଦ, ତେମନ୍ତ ଲୋକଙ୍କୁ ଏକା ସୁଖରେ ଭସେଇ ଦିଏ ।

[ ଭଦ୍ରାର ପ୍ରବେଶ ।

ରଜା—ଏହି, ଭଦ୍ରା ତ ଆସିଲାଣି ଏହିକ୍ଷଣି ସବୁ ହୋଇଯିବ । ତୁମେମାନେ ସମସ୍ତେ ସଧବା ସ୍ତ୍ରୀ ମିଳି ଗଣଦେବଙ୍କଠାରେ ଯୁଦ୍ଧରେ ଜୟଲାଭ ହେବା ନିମନ୍ତେ ମଙ୍ଗଳ ବାଞ୍ଛା କର । ଆମେ ଏହିକ୍ଷଣି ଯାଉଛୁ, ନଗରବାସୀ ସମସ୍ତଙ୍କୁ ନିଜ ନିଜ ଘର ସର୍ଜ୍ଜିତ କରି ମଙ୍ଗଳାଚ୍ଚର କରିବା ନିମନ୍ତେ ଆଜ୍ଞା ଦେବୁ । [ ପ୍ରସ୍ଥାନ ।

ରାଣୀ—ଭଦ୍ରେ ! ଶୀଘ୍ର ଶୀଘ୍ର ପୁରୋହିତଙ୍କୁ ଡାକି ଆଣ । ଆଉ କେତେକ-ବେଳେ ଆମର ଏ ପୁରରେ ଯେତେ ଅହିଅ ସ୍ତ୍ରୀ ଅଛନ୍ତି ସଭିଙ୍କି ତୁନ୍ତେଇ ଆଣିବ ।

ଭଦ୍ରା—( ମସ୍ତକ ଅବନତ କରି ) ରହିଲି—ରହିଲେ ନକୁଟେ ରାଧା—ତାର ଘଟାଇବ କେହି ବାଧା ! (ଅଳ୍ପ ପଦଗ୍ଭରଣ କରିନା ।)

ରାଣୀ—ପଦ୍ମା ! ସବୁବେଳେ ଆଜି ଏମନ୍ତ ବିକଳ ହୋଇ କାହିଁକି ରହୁଚ ? ଚାଲ ଗଣେଶଙ୍କର ପୂଜା କରିବା, ସେ ଥାଉଁ ଆମମାନଙ୍କର କିଏ କଣ କରିପାରେ ? — ଚାଲ ପୂଜାର ଆୟୋଜନ କରିବା ।

[ ପଦ୍ମାବତୀର ହସ୍ତ ଧରି ପ୍ରସ୍ଥିତା ।

ଭଦ୍ରା—ଆହା ! ପ୍ରିୟସଖୀ ମୋର ଏତେ ଦୁଃଖ ସହିବ ? ମୋର ତ ଏ ସବୁ ଶୁଣି ଗୋଡ଼ ଚାଲୁ ନାହିଁ । (ନକଟବର୍ତ୍ତୀ କାଷ୍ଠାସନେ ଉପବେଶନ ଓ ବେହେଳ ବାଦ୍ୟ ସହ ଗୀତ ।)

ଆହା, ପ୍ରାଣସଖି ଗୁଣବତି ! ତାଙ୍କ ଅଛି ମନ କାହା ପ୍ରତି !
କେତେ କେତେ ଦୁଃଖ, ପୂର୍ଣ୍ଣଚନ୍ଦ୍ରମୁଖ ଶୁଖାଇ ଦହୁଚ ସୁଖ -ମତି !
ଅରେ ଜୀବଧନ ! ତୋର ସୁଖେ ସିନା ସ୍ୱର୍ଗସୁଖାର୍ଜ୍ଜନ ! ୧ ।

ଯାହାଙ୍କ ମଧୁର ବଚନ ଶୁଣି, ସେ ତୋତେ ଦେଉଛ ମନ୍ତ୍ର କାଟି !
ସତ୍ୟଙ୍କ କୋମଳ ମତି ସେ ପାଗଳ ହୋଇଥିବ ଫାଟୁଥିବ ଛାତି !
ଆରେ ପ୍ରିୟସଖି ! ତାଙ୍କେ ଉଦ୍ଧାର ଶୋକରେ ଗଲୁ ଭାସି ! ୨ ।

ଏକ ଦୁଃଖ-ସିନ୍ଧୁ ନୋହୁଁ ପାର, ଦ୍ୱିତୀୟ ଭରେ ମୁଖ ବିସ୍ତାର !
ପଡ଼ିଛୁ କପାଳ ଦୁଃଖେ ଜଳିବାର କେଉଁ ମତେ କିସ ହେବ ତାର !
ଆରେ ପତିବ୍ରତ ! ସଖି, ବିଧାତାର ଅଟେ ଏହି ନୀତି ! ୩ ।

ଏକା ଭଗବାନ ସବୁ ଆଶା, ଦୁଃଖିଙ୍କ ଦୁଃଖକରମନାଶା !
ଜାଣନ୍ତି ସେ ତତ୍ତ୍ୱ ଜଣାବେ ଉଚିତ ଦୀନବନ୍ଧୁ ଭକ୍ତପ୍ରିୟ ଭାଷା !
ଆରେ କଳକଣ୍ଠି ! ଯତ୍ନେ ମୋ କଥା ରଖିଥା କର ଗଣ୍ଠି ! ୪ ।

ଆହା ! ନାହିଁ ଯାଏଁ—ଉତ୍ତର ହେଲେ ମା ଚଳିବେ ।

ପଟକ୍ଷେପଣ ।

---

ଚତୁର୍ଥ ଦୃଶ୍ୟ—ଗଣପତିଙ୍କ ମନ୍ଦିର ।

[ କୃଶାସନେ ପୁରୋହିତ ଦେବତା ପାର୍ଶ୍ୱେ ଉପବିଷ୍ଟ; ପୂଜାର ଯଥାବିଧି ଉପକରଣମାନ ପ୍ରସ୍ତୁତ; ରାଣୀ, ପୁରନାରୀ, ପଦ୍ମାବତୀ ଓ ସଖୀଦ୍ୱୟ ଏବଂ ଭଦ୍ରା ଉପସ୍ଥିତା । ]

ରାଣୀ—ଭଦ୍ରେ ! ଆଜ କେହି ଅଦ୍ୟାବଧି ବ କ୍ୟା ନାହାନ୍ତି ?

ଭଦ୍ରା—ନାହିଁ ମହିମା, ସମସ୍ତେ ଆସିଚନ୍ତି;—ବର୍ଷୀ ସ୍ୱର—ନାହିଁ ଉଚ୍ଚର !

ରାଣୀ—ଭଲ, ତେବେ ଗୋସାଇଁ, ଆପଣ ପୂଜା ଆରମ୍ଭ କରନ୍ତୁ !

ପୁରୋ—ଆଜ୍ଞା, ସଂକଳ୍ପ କାହା ନାମରେ କରଯିବ ?

ରାଣୀ—ସଂକଳ୍ପ ? ଓଡ଼ିଶା ରାଜା ଯେଉଁ ଅଣ୍ଟ କରି ମୋର ପଦ୍ମାବତୀଙ୍କି ଚଣ୍ଡାଳ ହାତରେ ପକେଇବ ବୋଲି କରୁଛି ଭଗବାନ୍ ଆସୁଚ, ମୋର ପଦ୍ମାବତୀ ଯେପରି ଅକ୍ଲେଶରେ ମହାନ୍ ରାଜାର ରାଣୀ ହେଇ

ଚିରକାଳ ସୁଖରେ କଟାଏ ମୋର ସେହି ସକଳ ଇଷ୍ଟଦେବ
ଗଣପତିଙ୍କ ପାଦପଦ୍ମରେ ନମସ୍କାର !

[ ସହସା ଗଣପତିଙ୍କ ଶିରୋଦେଶରୁ ଗୋଟିଏ ପୁଷ୍ପ ପତନ ।

ପୁରୋ—ତଥାସ୍ତୁ ! —ସକଳ ପୂର୍ଣ୍ଣ ହେଲା !

ରାଣୀ—ଗଣଦେବ ତୁଷ୍ଟ ଅଛନ୍ତି । ମୋର ପଦ୍ମାର କପାଳ, ମୁଁ ଆଉ କିଛୁ
ଜାଣେ ନା । ( ଭକ୍ତିଭାବେ ମନ୍ତ୍ରଭାବନତ । )

[ ସ୍ତ୍ରୀ ଲୋକଙ୍କର ହୁଳହୁଳୀ ଶଙ୍ଖଘଣ୍ଟାଦିର ଧ୍ୱନି
ଏବଂ ପୂଜା ଯଥାମତେ ସମାପ୍ତ ।

ଭଦ୍ରା—( ବେହେଲା ବଜାଇ ଗୀତ । )

ରାଗିଣୀ ସାହାନା । ତାଳ ଯତି ।

ସୁଖର ତରଙ୍ଗ ଆଜ ଖେଳେ କାଞ୍ଚିପୁରେ ।
ଗଣପତି ଗଣଦାତା ସର୍ବସୁଖ-ମୂଳେ ॥

ଶଙ୍ଖ ଘଣ୍ଟା ହୁଳହୁଳୀ, ପୁଲକିତ ଦେଶ ତୁଷ୍ଟ
ଗଜାନନ-ଯଶୋଗାନ ଘୋଷେ ଏକସ୍ୱରେ । ୧ ।

ଘରେ ଘରେ ଫୁଲମାଳ, ବିବିଧ ମଙ୍ଗଳାସ୍ତର,—
ଆମୋଦେ ଢାଳିଛି ଦେହ କାଞ୍ଚିପୁର ଖେଳେ । ୨ ।

ସତୀ ସାଧ୍ୱୀ ପୁରନାରୀ, ଠୁଳ ଦେଖ ଏକଥରୀ,—
ରାଜା-ରାଣୀ ହୋଇ ପଦ୍ମା ଭାସୁ ସୁଖ-ନୀରେ । ୩ ।

( ରାଣୀ ଓ ଉପସ୍ଥିତ ସମସ୍ତଙ୍କର ଦଣ୍ଡବତ୍ ।

ପୁରୋ—ମା ! ଗଣପତିଙ୍କର ଯେପରି ପ୍ରସାଦ ଦେଖାଗଲା ତହିଁରେ କୌଣସି
ଅମଙ୍ଗଳର ଆଶଙ୍କା ନାହିଁ—ସମସ୍ତ ସୌଭାଗ୍ୟର ଲକ୍ଷଣ । ଏବେ
ଆପଣ ପ୍ରସାଦୀ ସିନ୍ଦୂର ଗ୍ରହଣ କରନ୍ତୁ, ଆମେ ଆସୁଁ । ( ରାଣୀଙ୍କ
ହସ୍ତେ ସିନ୍ଦୂର ଓ ପୁଷ୍ପ ପ୍ରଦାନ କରି କଲ୍ୟାଣାନ୍ତେ ପ୍ରସ୍ଥାନ । )

ରାଣୀ—( ଏକେ ଏକେ ସମସ୍ତ ସଧବାଙ୍କ ସୀମନ୍ତରେ ସିନ୍ଦୂର ଲଗାଇ ଦେଇ ଦେଇ ) ସମସ୍ତେ ଆଶୀର୍ବାଦ କର, ପଦ୍ମା ରାଜରାଣୀ ହୋଇ ସୁଖରେ ଘର କରୁ ।

[ ସମସ୍ତ ସଧବାଙ୍କର ମସ୍ତକାବନତି କରିବା ।

( ହିନ୍ଦୁଡୋଳାକୁ ) ପଦ୍ମା, ଯିବୁନା ?

ପଦ୍ମା—ମା, ଆପଣ ଯାଆନ୍ତୁ, ଭଦ୍ରା ଓ ସଖୀମାନେ ଅଛନ୍ତି, ମୁଁ ପଛେ ଯାଉଛି ।

ରାଣୀ—ହଉ ଆ, ଶୀଘ୍ର ଆସିବୁ ।

[ ରାଣୀ ଓ ପୁରନାରୀଙ୍କର ପ୍ରସ୍ଥାନ ।

ପଦ୍ମା—ମାତଃ ! ଯେତେଦିନ ତୁମେ ମୋ ନିକଟରେ ଥିବ, ପଦ୍ମା ବନ୍ଧୁ-ଜନଙ୍କୁ ମଧ୍ୟ ଡରିବ ନାହିଁ । ମନରେ ହଜାର ଦୁଃଖର ଗୋଳମାଳ ଲଗିଲେ ସୁଦ୍ଧା ତୁମର ସଙ୍ଗୀତର ସୁମଧୁର ପ୍ରଭାବ ତାହାକୁ ଭୁଲେଇ ଦିଏ !

ଭଦ୍ରା—ସଖି ପଦ୍ମା ! ସବୁ ତୁମର ଅନୁଗ୍ରହ ! ଏ ଜୀବନ ଯାହାଦ୍ୱାରା ପ୍ରତିପାଳିତ ହୋଇଛି, ତାକୁ କି ସେ କ୍ଷଣକାଳ ପାଇଁ ଭୁଲି ରହିବ ? ଯହିଁରେ ତାହାର ସନ୍ତୋଷ ଜନ୍ମେ ତହିଁ କି ଏ ଜୀବନ ବଳି ହୋଇଛି—ତୁଛେଇଁ ଗୁଡ଼ାଏ ବଢ଼େଇ କାହିଁକି କହୁଛ ?—

ତୋହ ପାଶେ ସ୍ନେହ-ପାଶେ ବନ୍ଧା ମୋର ପ୍ରାଣ,
ଜୀବ ମୋର ଏକା ତୋର ଗୁଣକଥା, ଜାଣ ॥—

ସଖି ! ଢୋଲକ ଧର, ସୁର୍ଯୀକି ମନ୍ଦିରା ଦଅ ।

[ ବେହେଲ ସ୍ୱର ସହିତ ଗୀତ ଓ ବାଦ୍ୟ ।

ରାଗ ମୁଲତାନ । ତାଳ ଏକତାଲୀ ।

ପ୍ରଭୋ, ବିନା ଦୋଷେ ମୋତେ ଅଖିଳ ଜଗତେ
ଖର ଦୁଃଖସ୍ରୋତେ ଭସାଅ !
କାନ୍ଦି କାନ୍ଦି ପ୍ରଭୁ; ଗଲଣି ତ ସବୁ, ପୀଡ଼ିଲଣି ପର ନିଗ୍ରହ ।
ସଦା କରେ ମନ ଛାଡ଼ିବ ଜୀବନ, ପଥ, ପ୍ରଭୁ, ନିକେ ଦେଖାଅ ।

ପଦ୍ମା—ଆହା ଭଦ୍ରେ ! ପ୍ରିୟ ଭଗିନୀ ସବୁହେଁ ! ଏ ଜୀବନ ତୁମମାନଙ୍କ-
ଠାରେ ବନ୍ଧା ! ଅହୋ ! ଯେବେ ତୁମମାନଙ୍କର ପ୍ରାଣର ପଦ୍ମାବତୀ
ଆଜି ସୁଖରେ ଘର କରୁଥାନ୍ତା, ନ ଜାଣେ, ତୁମେମାନେ ତାର
ପ୍ରାଣକୁ କେପରି ଅଧିକ ଶୀତଳ କରୁଥାନ୍ତ ! ଆଜି ପଦ୍ମାବତୀ ବନରେ
ବ୍ୟାଧକର୍ତ୍ତୃକ ତାଡ଼ିତ ହରିଣୀ ପ୍ରାୟ—ଯେବେ ପ୍ରାଣଭୟରେ ପଳାଇ
ପଳାଇ ଇଢ ମଧ୍ୟରେ ଲତାଦ୍ୱାରା ଶିଙ୍ଗ ଆବଦ୍ଧ ହେବ, ସଖି, ତାର
ଆଉ ଗତି କ'ଣ ? ସଖି ସେ କି ଆଉ ଜୀବନରେ ବଞ୍ଚିବ ! ସଖି
କେବଳ ତୁମମାନଙ୍କୁ ଦେଖି ମୋର ଜୀବନ, ନୋହିଲେ ଏତେ
ଦିନକୁ କାବେରୀ-ଗର୍ଭରେ ବିଲୀନ ହୋଇ ଯାଇଥିବାର ବିଚିତ୍ର
ନ ଥିଲା ! ( କ୍ରନ୍ଦନ )

ଶଶୀ—( ଅସ୍ତ୍ରେ ଉଠି ଅଞ୍ଚଳରେ ନେତ୍ରକ ପୋଛି ଦେଇ ) ଆହା ! ତୁମ-
ହୁଅ !– କେତେ କାନ୍ଦିବ ? (ନିଜେ କାନ୍ଦି ଲୁହ ପୋଛିବା । )

ଭଦ୍ରା ଓ ସୁଯଁୀ—( କାନ୍ଦି ଲୁହ ପୋଛିବା । )

ପଦ୍ମା—ଶଶି, କେବଳ ରାଜଘରେ ଜନ୍ମ ହେବା ବାଞ୍ଛନୀୟ ନୁହେ !
ସମସ୍ତଙ୍କର ରାଜଗୃହରେ ଜନ୍ମ ହେବା ଆନ୍ତରିକ ଇଚ୍ଛା ; ମାତ୍ର ତହିଁ
ବଳି ପାପ ନାହିଁ ! ଯେବେ ସୁଖର କପାଳ ନେଇ ଜନ୍ମ ହେବ,
ତେବେ ଯହିଁ ଇଚ୍ଛା ସେଠି ଜନ୍ମ ହୁଅ ଶୋଭା ପାଇବ; ତହୁଁ
ଅଧିକ ହେଲେ ତ ସୁନାରେ ଟାଙ୍ଗଣା । ସଖି ? ମୋତେ ପ୍ରାଣେଶ୍ୱର
ବିବାହ ନ କରନ୍ତୁ କ୍ଷତି ନାହିଁ—ସେହି ପଦେ ଦାସୀ ହୋଇ ରହିବ
ଏତିକି ଇଚ୍ଛା !

ଶଶୀ—ଆହା ! କେଉଁ ପ୍ରାଣରେ ଏଭଳି ତୋତେ ଚଣ୍ଡାଳ ହାତରେ
ପକେଇବେ ବୋଲି ନିଷ୍ଠୁର ପ୍ରାଣରେ କହୁଥିଲେ !

ପଦ୍ମା—ଶଶି ! ତାଙ୍କୁ ନିନ୍ଦା କରିବ ନାହିଁ । ମୁଁ ତାଙ୍କୁ ଉତ୍ତମ ରୂପରେ
ଜାଣେ; ତାଙ୍କପରି ବୀରୋତ୍ତମ, ଦୟାଳୁ ଏବଂ ସଦାଚାରୀ ଲୋକ ଅତି
ଅଳ୍ପ ଦେଖାଯାନ୍ତି । ସେ ରାଗରେ ଏପରି କହି ପକେଇଥିବେ !

ତାଙ୍କର କେବେ ଏପରି ମନ ନୁହେଁ ଯେ, ମୋତେ କଷ୍ଟ ଦେବେ ! (ମାଂସ ଚର୍ମ ନିର୍ମିତ ଶରୀରକୁ ପାଷାଣ କରିବା ମନୁଷ୍ୟର କର୍ତ୍ତବ୍ୟ ନୁହେ, ନୋହିଲେ ପୃଥିବୀରୁ ଦୟା ମାୟା ଛଡି ଯିବ ସାଶଆଲ୍ରାଣି ) ଯେତେବେଳେ ଶ୍ରୀ ଜଗନ୍ନାଥଦେବଙ୍କର ରଥଯାତ୍ରା ଉଦ୍ଦେଶ୍ୟରେ ପୁରୀରାଜାଙ୍କୁ ଦେଖିବା କାରଣ ପିତା ମାତାଙ୍କ ସଙ୍ଗରେ ଯାତ୍ରା କଲି, ସେତେବେଳେ ଯେଉଁ ପ୍ରଣୟ ବୀଜର ଆଗନ୍ତୁ ସୂତ୍ରପାତ ହୋଇଥିଲା ତାହା ଦ୍ବିଗୁଣୀଭୂତ ହେଲା । ତହିଁ ଉତ୍ତାରୁ ପ୍ରାଣେଶ୍ୱରଙ୍କୁ ଦେଖିଲା ବେଳୁଁ ପ୍ରଣୟ ପ୍ରେମରେ ପରିଣତ ହେଲା, ମନକ୍ଷେତ୍ରରେ ପ୍ରଣୟବୀଜରୁ ପ୍ରେମାଙ୍କୁର ଜାତ ହେଲା, ଯେ ତା ସ୍ୱାଭାବିକ—ଆଜି କଲିକି ପ୍ରାଣେଶ୍ୱରଙ୍କୁ ତେତେବେଳେ ପ୍ରାଣେଶ୍ୱର ବୋଲି ବୁଝିପାରିଲି ! ହଠେ ଉପବନରେ ସ୍ୱପ୍ନ ଜେଙ୍କୁ ତୋଙ୍କୁ ହଠାତ୍ ପ୍ରାଣେଶ୍ୱରଙ୍କୁ ସେଠାରେ ଉପସ୍ଥିତ ହେବାର ଦେଖି ଲଜ୍ଜାରେ ପଳାୟନ କରିଥିଲି—ସେ ଦିନ ଆଉ ମୁଖ୍ ପରେ ସୁଛା ମିଳିବ ନାହିଁ !!! ( କେତେକ ତ୍ୟାଗ । ) ହଠେ ପିତାଙ୍କ ସଙ୍ଗରେ ମହାପ୍ରସାଦ ସେବା କରୁ କରୁ ହଠାତ୍ ପ୍ରାଣେଶ୍ୱରଙ୍କୁ ସେଠାରେ ପହଞ୍ଚିବାର ଦେଖି ଝଟ୍ ଛଡି କବାଟ କୋଣରେ ମିଶିଗଲି, ଆଉ ଆମର ସ୍ଥାନରେ ସେ ବସି ପିତାଙ୍କ ସହିତ ମହାପ୍ରସାଦ ସେବା କଲେ ! ଏ ଦୁଃଖି-ପ୍ରାଣ ତାହା ସ୍ମରଣ ଆଉ ଏ ଅସ୍ୱାନକ ବଇଦ ସହିପାରିବ ନାହିଁ !!! ଦୁଃଖିନୀର କପାଳ ପଡ଼ିଗ—ଭଗବାନଙ୍କର ମାୟାଚକ୍ରରେ ଅଧୀନା କ୍ରୀଡ଼ାପଦାର୍ଥ ହୋଇ ବୁଲୁଚ; [ଯେଉଁଦିନ ଉନ୍ନତମ ସ୍ଥାନକୁ ଆସି ହତଭାଗିନୀର ପଦ ସ୍ଖଳନ ହେବ, ତେତେବେଳେ ତୁମେମାନେ ଅଟେ ଦୁଃଖର ତାନ ଧରି ପ୍ରଭୁଙ୍କ ସମକ୍ଷରେ ପରଲୋକରେ ହେଲେ ସୁଖଲାଭ କରିବା ନିମନ୍ତେ ପ୍ରାର୍ଥନା କରିବ ! ନାହିଁ, ଯେବେ ଈଶ୍ୱରଙ୍କ ଚକ୍ର ଉପରଭାଗକୁ ଯାଇ ଅଧୀନାର ଭାଗ୍ୟର ସୁପରିବର୍ତ୍ତନ ଘଟେ, ତେବେ ଅଧୀନା ସେହି ଦିନ ତୁମମାନଙ୍କୁ ମନର କବାଟ ଫେଇ ସବୁ କଥା

ଉଦ୍ଧରିବ ! ହେ ସ୍ୱଦେଶ ତୁମେମାନେ ଓଡ଼ିଶା ରାଜାଙ୍କ ଅଧୀନତାର ଦୁର୍ଦ୍ଦଶା ସ୍ମରଣ କରୁଥିବ । ବର୍ତ୍ତମାନ ଏ ରାଜନନ୍ଦିନୀର କପାଳ ଲୁହେ; ଏ ହତଭାଗିନୀ !—ହା ବିଧାତଃ
(ମୂର୍ଚ୍ଛା ଓ ପତନ ।)

ଭଦ୍ରା—( ବ୍ୟସ୍ତ ସ୍ୱରେ ) ଆଣ ଆଣ, ପାଣି ଆଣ, ଶଶି —

ଶଶୀ ଓ ସୂର୍ଯ୍ୟୀ—ସେ କଣ, ସେ କଣ ? (ବ୍ୟସ୍ତେ ଛୁଟି ଯାଇ ପାଣି ଆଣି ମୂର୍ଚ୍ଛାପନୋଦନ କର ) ଆହା ! କେତେ ଦୁଃଖ ସହିବ !

ପଦ୍ମା—ଆହା ଭଦ୍ରେ ! ପ୍ରାଣେଶ୍ୱର ପ୍ରଭୃତ କଟକକୁ ଆସୁଛନ୍ତି, ଆଗେ ଆପଣା ପାଇଁ ଯାଣ୍ଠି ହେଉଥିଲି, ଏବେ ପିତାମାତାଙ୍କ ପାଇଁ ଯାଣ୍ଠି ହେଉଛି ! ଆଜ ଇଷ୍ଟଦେବଙ୍କର ଯେପରି ପ୍ରସାଦ ଦେଖାଗଲା—ମୁଁ ଏହିକ୍ଷଣି ସ୍ୱପ୍ନରେ ଦେଖୁଥିଲି ପ୍ରାଣେଶ୍ୱର ଯୁଦ୍ଧରେ ହାରି ବନକେ ଜୀବନ ବିସର୍ଜ୍ଜନ କରିବାକୁ ଉଦ୍ୟତ ହେଉଛନ୍ତି ! ଆହା ! ଯେବେ ଯୁଦ୍ଧରେ ପ୍ରାଣେଶ୍ୱର ହାରିଯିବେ—ତେବେ ଅଧୀନତାର କି—

ଭଦ୍ରା—ଆହା ! ତୁମ ସ୍ୱପ୍ନ ! ଆଉ ବିକଳ ହୁଅ ନାହିଁ । ପ୍ରଭୁ ଅଛନ୍ତି, ଚିନ୍ତା କିସ ?

ପଦ୍ମା—(ବିକଳେ କ୍ଷଣକାଳ ସ୍ତବ୍ଧ ଥାଇ) ଭଦ୍ରେ ! କି ଚିନ୍ତା କରୁଛ ? ଏତେ ବିଶ୍ୱେ କାହିଁକି ?

ଭଦ୍ରା—ପଦ୍ମା, ଚିନ୍ତା କଣ ? ତୁମର ଦୁଃଖ ସୁମର ହୃଦ ଦଗ୍ଧ ହୋଇଯାଉଛି । ତୁମେ ଯେଉଁ ସୁକଣ୍ଠରେ ଅନେକ ଗୀତ ଗାଉଥିଲ, ଦୁଃଖରେ ତା ବାଷ୍ପ ପରି ଆକାଶକୁ ଉଡ଼ିଗଲାଣି—ମୋର ତହିଁରେ ପ୍ରାଣ ପର୍ଯ୍ୟନ୍ତ କାନ୍ଦୁଛି । ଆହା ଗୁଣବତି ! ତୁମର ମନ ଏବେ ବି ଫିଟିଲା ନାହିଁ ।

ପଦ୍ମା—(ବିକଳେ) ହଁ—(ଗୀତ)

ରାଗିଣୀ ମଲ୍ଲାର । ତାଳଠୁଂରୀ ।

କି ସୁଖେ ଫେଡ଼ିବ, ଭଦ୍ରେ, ମନ !
ଫିଙ୍ଗିଦେଲେ ତରୁବର ମାଳତୀ କି ଯଡ଼େ ଶୁଣ୍ଡା କ୍ଷଣ !!

ଦୁଃଖେ ଦୁଃଖ ମିଶି ଆସି, ସୁଖ ଶଶୀ ଯାଏ ଭାସି,
ବୁଡ଼ିଯାଏ ଚନ୍ଦ୍ର ସଙ୍ଗେ ଛିନ୍ନ-ନାଳ ପଦ୍ମ କି ଯେସନ ! ୧ ।

ଭଦ୍ରା—ଆହା ! କି ସୁମଧୁର ସ୍ୱର ! ଏହା ମଧ୍ୟ ବିଧାତା ସହି ନ ପାରି ବନ୍ଦ କରୁଛି !

ପଦ୍ମା—ଭଦ୍ରେ ! ଏ ମୋର କପାଳ—ଏଥିରେ ଭଗବାନ ଯାହା କରନ୍ତୁ !!!

ଶଶୀ—ଭଉଣି ! ଆଉ ବିଳମ୍ବ କରିବାର ଭଲ ନୁହେ । ମା ଚେଣେ ବିରକ୍ତ ହେଉଥିବେ ।

ପଦ୍ମା—ହଉ, ଚ ଯିବା,—ଭଦ୍ରେ, ଏ କାନକୁ କଅଣ କଅଣ ପରିହାସ କରୁଥିବଟି ?

ଭଦ୍ରା—ସ୍ୱା ଆଉର କହିବାକୁ ?—

ଯାର କଥା ତାର, କେବେ ନ ଭୁଲେ ସଂସାର !

ପଟକ୍ଷେପଣ ।

— —

ପଞ୍ଚମ ଦୃଶ୍ୟ । ସଭାଗୃହ ।

[ କାଞ୍ଚିରାଜା, ମନ୍ତ୍ରୀ ଓ ସଭାସଦ୍‌ବର୍ଗ ଆସୀନ । ]

ରାଜା—( କ୍ଷଣକାଳ କର୍ଣ୍ଣନିବେଶ କରି ) ମନ୍ତ୍ରିନ୍ ! କିଛି ଗୋଳମାଳ ଶୁଣି ପାରୁଛ ?

ନେପଥ୍ୟେ—( ଧୀର ରଣବାଦ୍ୟ । )

ମନ୍ତ୍ରୀ—( ଅଳ୍ପ କର୍ଣ୍ଣ ଡେରି ) ଆଜ୍ଞା ମହାରାଜ ! ଏତ ଯୁଦ୍ଧବାଦ୍ୟ ପରି ଶୁଭୁଛି—ବହୁତ ଦୂରରେ ।

[ ରଣବାଦ୍ୟର କ୍ରମେ ବୃଦ୍ଧି ।

ରାଜା—ଯୁଦ୍ଧବାଦ୍ୟ ନୁହେଁ ?—ଦେଖ କେହେ ଶୀଘ୍ର ଶୀଘ୍ର ଖବର ଆଣୁଚ ।

ମନ୍ତ୍ରୀ—ଆଜ୍ଞା, ଅତି ଶୀଘ୍ର ଶୀଘ୍ର—ଏହିଆଡ଼େ ତ—ସେ କଣ ଉତ୍କଳ ରାଜା ଆସିଗଲେ କି ?

ପ୍ରଧାନ ସଭାସଦ୍—ଏତେ ଶୀଘ୍ର ?—ଏ କି ! ଜୟ ଜଗନ୍ନାଥ ଶବ୍ଦ ?

ମନ୍ତ୍ରୀ—ମହାରାଜ ! ନିଶ୍ଚେ ଉତ୍କଳରାଜା ଆସି ପହଞ୍ଚିଗଲେ ପରା ?

ରାଜା—କି ଆଶ୍ଚର୍ଯ୍ୟ ! ଆମ୍ଭମାନଙ୍କର ସେନାଏ କି ଶୋଇଛନ୍ତି ?

ନେପଥ୍ୟେ—(ରଣବାଦ୍ୟର ଘୋର ଗୋଳମାଳ ।)

ମନ୍ତ୍ରୀ—ମହାରାଜ ! ଏହି ଶୁଣନ୍ତୁ ଆମର ସେନାଏ ମଧ୍ୟ ଜାଗ୍ରତ ହେଲେଣି; ସେ ଶୁଣ ରଣ ଶବ୍ଦ !

ରାଜା—ହୋ, ସେ କଣ ଯୁଦ୍ଧ ଲାଗିଲା ! ( ବ୍ୟସ୍ତେ କର୍ଣ୍ଣନିବେଶ ।)

ନେପଥ୍ୟେ—( ରଣବାଦ୍ୟର ବିଶେଷ ଗୋଳମାଳ ଏବଂ ଅସ୍ତ୍ର ଓ ଗୋଳା ଗୁଳିର ଶବ୍ଦ । )

ମନ୍ତ୍ରୀ—ନିଶ୍ଚେ ଯୁଦ୍ଧ ହେଲା ।

ରାଜା—ମନ୍ତ୍ରିନ୍ ! ସଭା ଭଙ୍ଗ କର;—ଚାଲ, ରଣସ୍ଥଳକୁ ଯାଇ ଯେତେ ଆବଶ୍ୟକ ହୁଏ ସେନାଙ୍କୁ ଉତ୍ସାହିତ କରିବା । ଆମ୍ଭେମାନେ ସେଠାରେ ଉପସ୍ଥିତ ଥିଲେ ବିଧିବିଡ଼ମ୍ବନାରେ ଯେଉଁ ବିପଦ ଘଟିପାରିବ, ତାହା କେତେକାଂଶରେ ବଦ୍ଧନିତ ହୋଇପାରେ ।

ନେପଥ୍ୟେ—( ଘୋର ଗୋଳମାଳରେ 'ଜୟ ଜୟ' ଶବ୍ଦ । )

ରାଜା—ସେ କଣ ? ସେ ଜୟ ଜୟ ଶବ୍ଦର ଅର୍ଥ କି ?—ଏତେଶୀଘ୍ର କି ଯୁଦ୍ଧରେ ଫଳାଫଳ ନିଷ୍ପତ୍ତି ଯାଇଗଲା ? ଚାଲ, ଉଠ, ସମସ୍ତେ ଚାଲ ( ଉଠି ଦଣ୍ଡାୟମାନ । )

ସମସ୍ତେ—( ପ୍ରସ୍ଥାନୋଦ୍ୟତ । )

[ ବ୍ୟସ୍ତେ ଦ୍ୱାରୀର ପ୍ରବେଶ ।

ଦ୍ୱାରୀ—ମହାରାଜ ! ସେନାପତି ଦ୍ୱାରେ ?

ରଜା — ସେନାପତି ? ଆଣ ତାଙ୍କୁ ।

ଦ୍ୱାରୀ — ଯେ ଆଜ୍ଞା । [ ପ୍ରସ୍ଥାନ

ମନ୍ତ୍ରୀ — ମହାରାଜ ! ବୋଧହୁଏ ଶୁଭସମ୍ବାଦ ।

ରଜା — ଦେଖାଯାଉ ।

[ ସମସ୍ତଙ୍କର ଯଥାସ୍ଥାନରେ ଉପବେଶନ ଓ ସେନାପତିର ପ୍ରବେଶ ।

ସେ, ପ — ( ଗଦଗଦସ୍ୱରରେ ଦଣ୍ଡବତ କରି ) କାଞ୍ଚିରାଜାଙ୍କର ଜୟ ! ଗଣଦେବଙ୍କର ଜୟ !

ରଜା — ( ଆସନରୁ ମହାନନ୍ଦେ ଉଠି ସେନାପତିଙ୍କି କୋଳାଗ୍ରତ କରି ନେଇ ନିଜ ବାମପାର୍ଶ୍ୱେ ବସାଇବା । )

ମନ୍ତ୍ରୀ ଓ ପାରିଷଦବର୍ଗ — ( ମହାନନ୍ଦେ ରଜାଙ୍କର ଗାତ୍ରୋତ୍ଥାନସହ ଦଣ୍ଡାୟମାନ ହୋଇ ଆନନ୍ଦ ପ୍ରକାଶାନନ୍ତର ଉପବେଶନ । )

ରଜା — ସମସ୍ତେ ସ୍ଥିର ହୋଇ ଆସନେ ଉପବେଶନ କର । ଆଜି ଯେଉଁ ଜୟଲାଭ ହୋଇଛି ଆଉ ଯାହାଦ୍ୱାରା କାଞ୍ଚିରାଜାର ମହତ୍ତ୍ୱ ସମ୍ମାନ ରକ୍ଷା ପାଇଛି, ସେ କଥା ପଛେ ଶୁଣିବା । ଏହିକ୍ଷଣି ଆମେ ତୁମମାନଙ୍କ ସାକ୍ଷାତରେ ସେନାପତିଙ୍କି ଏହି ସୁବର୍ଣ୍ଣମୟ ପଦ୍ମପଦକ ପୁରସ୍କାର-ସ୍ୱରୂପ ପ୍ରଦାନ କଲୁଁ ; ( ପଦକ ବେକରୁ ନେଇ ସେନାପତିଙ୍କି ପିନ୍ଧାଇ ଦେଇ । ) ଆଉ ଏଥି ସଙ୍ଗେ 'ବଜ୍ରନାଦ' ଉପାଧି ମଧ୍ୟ ପ୍ରଦତ୍ତ ହେଲା ।

ସମସ୍ତେ — ଜୟ କାଞ୍ଚି ମହାରାଜାଙ୍କର ଜୟ ! ! !

ସେ, ପ — ( ପଦକ ପିନ୍ଧି ଆନନ୍ଦେ ମସ୍ତକାବନତ କରଣ । )

ରଜା — ଏବେ ବଜ୍ରନାଦ, କପରି ଯୁଦ୍ଧକାଣ୍ଡର ଘଟନା ହେଲା, ଗୋଟି ଗୋଟି ପୂର୍ବାପର ସମସ୍ତ ବର୍ଣ୍ଣନା କରି ସଭାସ୍ଥଳକୁ ସୁଖୀ କର ।

ସେ, ପ — ମହାରାଜ ! ଯିମ୍ଭୁ କାଞ୍ଚୀନାବେରୀର ରଜା — ଆମ୍ଭମାନଙ୍କ ପକ୍ଷରେ ଇନ୍ଦ୍ରଠୁଁ ମହତ୍ତର । ଯିମ୍ଭୁଙ୍କର ସେହି ଅମୋଘାସ୍ତ୍ର ମନ୍ତ୍ରିଙ୍କ ମୁଖରୁ

ପ୍ରାପ୍ତ ହେଲକ୍ଷଣି ସୈନ୍ୟମାନଙ୍କୁ ସୁସଜ୍ଜିତ କରି ଶତ୍ରୁଦୋଟ ପନ୍ଥନର ଉପର ପ୍ରାନ୍ତସ୍ଥଳରେ ରଖିଲି ଲଲୁଁ । ଦୂର ବନ ପର୍ଯ୍ୟନ୍ତ କୌଣସି ଶବ୍ଦମାତ୍ର ଶୁଣାଯାଇ ନାହିଁ; ତେବେହେଁ ସୈନ୍ୟମାନେ ଏକଦଳ ଶୋଇଲେ ଅନ୍ୟଦଳ ଜାଗ୍ରତ ହୋଇଥିଲେ । ଆମେ ଆଜ୍ଞା ପାଇଲି ବନରୁ ଶୋଇନାହୁଁ— ନଗର ଚତୁର୍ଦ୍ଦିଗରେ ଦୂର ତିନ କୋଶ ଦୂର ପର୍ଯ୍ୟନ୍ତ ଗଡ ବସ୍ତାର କରି ଶତ୍ରୁର ଆଗମନ ଅପେକ୍ଷା କରୁଥାଉଁ । ଆଜି ବନ ଚଣ୍ଡାଳ ସମୟରେ ନଗରସୀମାରୁ ପ୍ରାୟ ଅର୍ଦ୍ଧକୋଶ ଦୂର ଯାଇଛୁଁ, ଏମନ୍ତ ସମୟରେ ଦୂରରୁ କୋଳାହଳ ଶୁଭିଲା ।

ରାଜା—ସେ କୋଳାହଳ କେତେ ଦୂରରେ ଥିଲା ?

ସେ, ପ—କୋଶକରୁ ଅଧିକ ଦୂରରେ, ମହିମା !

ରାଜା—ତୁମେ ଓଡ଼ିଶାରାଜା ଆସୁଛ ବୋଲି ଜାଣିପାରିଲ ?

ସେ, ପ—ମହାରାଜ ! ଯୁଦ୍ଧ କ ଆଜି ନୂଆ ଶିଖେଛି ହବ ? ଏହି କର୍ମରେ ଅଧୀନଙ୍କୁ ଆଜି ପଚାଶ' ବର୍ଷ ।

ରାଜା—ଧନ୍ୟ ବହୁନାଦ !— ହଁ ତାହୁଁ ?

ସେ, ପ—ଆମେ ଶବ୍ଦ ଶୁଣିଲା ମାତ୍ରକେ ଘୋଡ଼ା ଚପଟାଇ ସୈନ୍ୟମାନଙ୍କୁ ପ୍ରସ୍ତୁତ ହେବାକୁ ଆଜ୍ଞା ଦେଲୁଁ । ମହାରାଜ ! ଛମୁ ସେନାମାନେ ମଧ୍ୟ ବଡ଼ ଦକ୍ଷ, ଆଜ୍ଞା ପ୍ରାପ୍ତି ମାତ୍ରେ ପ୍ରସ୍ତୁତ ହୋଇଗଲେ । ଓଡ଼ିଶା-ରାଜାର ସେନାମାନେ ମଧ୍ୟ, ମହିମା, ଶୁଣା ନୂତନ—ଦେଖୁଁ ଦେଖୁଁ ପହଞ୍ଚିଗଲେ । ଆମେ ତତ୍‌କ୍ଷଣାତ୍ ରଣବାଦ୍ୟର ଆଜ୍ଞା ଦେଲୁଁ;—ଶୁଣିତ ସେନାଏ ଲୁହ ପଡ଼ି 'ଗଣ ଗଣ' ଶବ୍ଦରେ ଗଗନ ଗର୍ଜି ପକାଇଲେ । ଓଡ଼ିଶା ସେନାଏ ଜୋଡ଼ାଏ ପଦାତିକ ଶ୍ରେଣୀରେ ଆସୁଥିଲେ, (ରଣବାଦ୍ୟ ଶୁଣିଲାକ୍ଷଣି—କି ଆଶ୍ଚର୍ଯ୍ୟ ଦୃଶ୍ୟ, କି ଆଶ୍ଚର୍ଯ୍ୟ ଶିକ୍ଷା—ଏକାବେଳକେ ଛିନ୍ନଭିନ୍ନ ହୋଇ-ଗଲେ ।) ତାଙ୍କଠୁଁ ଆମସେନାଏ ଦେଢ଼ଗୁଣ, ସେ କଣ କରିବେ— ସେମାନେ ପ୍ରସ୍ତୁତ ହେଉଁ ହେଉଁ ଆମର ସେନାଏ ଘୋଟାଏ

କୋଣ ଭେଦ କରିଦେଲେ । ଯେଉଁ 'ଜୟ ଜୟ' ଶବ୍ଦ ଉଠିଲା ତମ୍ଭୁରେ ତା ଶୁଣା ହେଉଥିବ—ସେହି ସୁଅରେ ଅପମାନ ସହିତରେ ଓଡ଼ିଶାରାଜା ଖସିଗଲେ ।

ରାଜା—( ମହାନନ୍ଦେ ସେନାପତିଙ୍କୁ ପୁନରାଲିଙ୍ଗନ କରି ) ଧନ୍ୟ ବଜ୍ରନାଦ ! ଯେପରି କାଞ୍ଚୀରାଜାର ମାନ ରକ୍ଷିତ ତୁମକୁ ସେହିପରି ସମ୍ମାନିତ କରାଯିବ । ଓଡ଼ିଶାରାଜା ଯେ ବର୍ତ୍ତମାନ ଫେରିଲେ ହେଇ ପଳାଇଛ ଏପରି ବୋଧ ହେଉନାହିଁ । ତୁମେ ଅଶ୍ତ୍ରିନ୍ତ ନ ରହି ପ୍ରସ୍ତୁତ ଥାଅ, ଯାଉ ଦ ଦନ । ମନ୍ତ୍ରିନ୍ । ନଗରରେ ଜୟ ଘୋଷଣା କରି ନଗରବାସୀ ସମସ୍ତଙ୍କୁ ସମସ୍ତ କାର୍ଯ୍ୟରୁ ବନ୍ଦ ହୋଇ ସତର୍କ ରହିବା ନିମନ୍ତେ ଆଜ୍ଞା ଦିଅ । ଯେତେବେଳେ ସବୁ ଗୋଳମାଳ ରହିତ ହେବ ତେତେବେଳେ ଆନନ୍ଦୋତ୍ସବ, ସେନାପତିଙ୍କର ଅଭ୍ୟର୍ଥନା ଓ ଗଣପତିଙ୍କର ପୂଜା କରାଯିବ ।

ମନ୍ତ୍ରୀ—ଯେ ଆଜ୍ଞା । ( ପ୍ରସ୍ଥାନୋଦ୍ୟତ । )

ରାଜା—ହଁ, ଆଉ ଗୋଟିଏ କଥା ଅଛି—ଯେଉଁ ଦୂତ ବନ୍ଦୀ ହେଇଥିଲା ତାକୁ ଘେନି ଆସ ।

ମନ୍ତ୍ରୀ—ଦ୍ୱାରି !—

ନେପଥ୍ୟେ—ଅବଧାନ । [ ଦ୍ୱାରୀର ପ୍ରବେଶ

ମନ୍ତ୍ରୀ—ସେ ଦିନ କାରାଧକ୍ଷଙ୍କ ହାତରେ ଯେଉଁ ଦୂତକୁ ଅର୍ପଣ କରିଥିଲ, ତାକୁ ଘେନି ଆସ ।

ଦ୍ୱାରୀ—ଆଜ୍ଞା । [ ପ୍ରସ୍ଥାନ ]

ରାଜା—ଆଉ ତେବେ ବର୍ତ୍ତମାନ କୌଣସି କାର୍ଯ୍ୟ ନାହିଁ । ସେନାପତେ ! ତୁମେ କାଞ୍ଚୀ ରାଜାଙ୍କର ଯଥାର୍ଥ ମାନ-ରକ୍ଷା କରିଛ । ଦେଖିଲ କେଡ଼େ ବଡ଼ ଆସ୍ପର୍ଦ୍ଧା ! ମୋତେ ଚଣ୍ଡାଳ ଜ୍ଞାନ କରନ୍ତା, ଛଡ଼ କି ଥିଲା ? ସେ କଣଜା ମୋର ସୁନାର ପଦ୍ମାବତୀକୁ ନେଇ ଚଣ୍ଡାଳ

ହାତରେ ପଡ଼ିଲା ? ଏବେ ତାର ଦଶା ଦେଖ ଚଣ୍ଡାଳକୁ ବ
ନାହିଁ ।—

( ବଦ୍ଧହସ୍ତପଦ ଦୂତସହ ଦ୍ୱାରୀର ପ୍ରବେଶ )

ତାହାର ବନ୍ଧନ ମୋଚନ କର ।

ଦ୍ୱାରୀ—( ବନ୍ଧନ ମୋଚନ କରଣ । )

ଦୂତ—( କରଯୋଡ଼େ ଦଣ୍ଡାୟମାନ । )

ରାଜା—ମେଘବର୍ଣ୍ଣ । ତୋର ରାଜାର ଦର୍ପ ଚୂର୍ଣ୍ଣ ହୋଇଛି; ସୁତରାଂ ତୋର ମଧ୍ୟ ଦର୍ପ ଚୂର୍ଣ୍ଣ ହେଲ । ଏବେ ଯା, ଆପଣା ପକ୍ଷର ଲୋକଙ୍କ ସଙ୍ଗେ କାନ୍ଦିବୁ ଆଜ ଦେଖିବୁ କଏ ଚଣ୍ଡାଳରୁ ହୀନ ।—ଆମର ଅଭୀଷ୍ଟ ସିଦ୍ଧି ହୋଇଛି, ସୁତରାଂ ତୋତେ ଆଜ ବନ୍ଦୀ କରି ରଖିବାର ପ୍ରୟୋଜନ ନାହିଁ ।

ମେଘ—ଅନୁଗ୍ରହ ! ଏବେ ମୁଁ ଆସ୍ତେ । (ଦଣ୍ଡବତ ଓ ପ୍ରସ୍ଥାନ । )

ସେ, ପ—ମହାରାଜାଙ୍କର ଦୟାର ଶରୀର !

ରାଜା—ଏବେ ସଭା ଭଙ୍ଗ କର ।

ଯବନିକା ପତନ ।

---

# ଚତୁର୍ଥ ଅଭିନୟ

## କାଞ୍ଚୀଦେଶ

### ପ୍ରଥମ ଦୃଶ୍ୟ । ଆମ୍ର କାନନ

( ପୁରୁଷୋତ୍ତମଦେବ ଏକାକୀ ଏକ ବୃକ୍ଷମୂଳରେ ଆଣ୍ଠୁମାଡ଼ି କରଯୋଡ଼ିକରି ଭକ୍ତିଭବରେ ଆସୀନ । )

ରାଜା—( କରୁଣସ୍ୱରରେ ) ପତିତପାବନ ! ପତିତପାବନ-ନାମରେ କଳଙ୍କ ଲଗିବ ବୋଲି କେଉଁ ମନ କି ସାହସରେ କହି ପାରେ ? ଦେବ ! ଦୀନ ସେହି ପାଦପଦ୍ମରେ ଆଜନ୍ମ ଭିକ୍ଷା ପ୍ରାର୍ଥନା କରି ଯେପରି ସୁଖରେ ପ୍ରତିପାଳିତ ହୋଇ ଆସିଛି ତହିଁ ଦେବ ଅନନ୍ତଶୟନରେ ସେ ସୁଖଲାଭ କରନ୍ତୁ କି ନାହିଁ ସନ୍ଦେହ ! ଯେତେବେଳେ କରୁଣା-ଜଳ ହିଲ୍ଲୋଳ ପ୍ରଭାବରୁ ମନ ଅନ୍ତରମ୍ଭାରୁ ହଜିପି ଉଠି କାନ୍ଦ ପକାଏ, ଦେବ ! ସେ ଆନନ୍ଦାଶ୍ରୁ ପବିତ୍ର ବୃଷ୍ଟିଧାରା ଅପେକ୍ଷା ମଧୁରତର ଅଟେ । ସମ୍ମୁଖରେ ସୁନ୍ଦର ନୀଳପର୍ବତ ପ୍ରତିମ୍ଭିତ; ସୁନ୍ଦର ଶାରଦୀୟ ଚନ୍ଦ୍ରିକା ଚତୁର୍ଦ୍ଦିଗରେ ପ୍ରତିଫଳିତ, ପୁଣି ବନରେ ପକ୍ଷୀଙ୍କର ସନ୍ଧ ଦେଖି ଝାଙ୍କି ଅନାହତ; ନିର୍ମଳ ନକ୍ଷତ୍ରପୂରିତ ଆକାଶ; ଜ୍ୟୋତିର୍ମୟ ଆକାଶମେଖଳା ଛାୟାପଥ,—ଦେବ, ପ୍ରକୃତିର ଏସବୁ ମନୋହାରୀ ଦୃଶ୍ୟ କି ଦେବଙ୍କ ମହିମା କୀର୍ତ୍ତନ କରୁ ନାହିଁ ? ଦୀନ ମଧ୍ୟ ସେହି ମହିମା ଏଠାରେ କୀର୍ତ୍ତନ କରୁଛି,—ତାରତମ୍ୟ— ସେମାନେ ଆନନ୍ଦରେ, ଦୀନ ମନୋଦୁଃଖରେ ! ( ଅଶ୍ରୁତ୍ୟାଗ । ) ଯେତେବେଳେ ଘୋର ପୀଡ଼ାରେ ପୀଡ଼ିତ ହୋଇ ପିତା କପିଳେନ୍ଦ୍ର ଦେବ ମୃତ୍ୟୁଶଯ୍ୟାରେ ଶୟାନ ଥାଇ କାହାକୁ ଉତ୍ତରାଧିକାରୀ କରିବେ ବୋଲି ଚିନ୍ତାରେ ଆକୁଳିତ ହେଉଥିଲେ, ଦେବ ! ସେତେବେଳେ ଅଷ୍ଟାଦଶ ପୁତ୍ରଙ୍କ ମଧ୍ୟରେ ଅଧୀନକୁ ଉତ୍ତରାଧି-କାରୀ କରିବା ନିମନ୍ତେ ସ୍ୱପ୍ନରେ ଆଦେଶ ଦେଲେ । ପିତାଙ୍କ ସ୍ୱର୍ଗ-ଗମନର ଅବ୍ୟବହିତ ପରେ ରାଜସିଂହାସନରେ ନ ବସୁଣୁ ସମାଚ୍-

ଗର୍ଭଜାତ ଭ୍ରାତାମାନେ ନାନାବିଧ ଉପାୟରେ ମୋତେ ବଧ କରିବାକୁ ବସିଲେ, ଦେବ ! ଦେବଙ୍କ ମୋର ଏକମାତ୍ର ସହାୟ ଥାଇ ଏ କ୍ଷୁଦ୍ର ଜୀବନ ରକ୍ଷା କଲେ । ଯେଉଁଦିନ ସେମାନେ ମୋର ହସ୍ତ ପଦ ବନ୍ଧନ କରି ସମୁଦ୍ରରେ ଫିଙ୍ଗିବାକୁ ବସିଲେ, ଦେବ, ଏକା ମୋନବନ୍ଧୁହିଁ ମୋର ସହାୟ ହେଲେ ! ମୁଁ କେବଳ ଦେବଙ୍କର ସାହାଯ୍ୟ ଲଭିଥିଲି ବୋଲି ସେମାନେ ସମସ୍ତ ଉଦ୍ୟମରେ ବିଫଳ-ପ୍ରଯତ୍ନ ହୋଇ ଦକ୍ଷିଣ ଓ ପଶ୍ଚିମ ଆଡ଼ରେ ଦୂର ଦେଶକୁ ଅପମାନରେ ପଳାୟନ କଲେ । ଦେବଙ୍କୁ କାଞ୍ଚୀରାଜା ଅପମାନ ଦେଲା—ସେବକକୁ ଅନ୍ୟାୟ କରି ଦେବଙ୍କୁ ଅବହେଳା କଲା, ମୁଁ ତହିଁର ଶୋଧ ନେବାକୁ ଇଚ୍ଛା କରିବାରୁ, ଦେବ, ପଥପ୍ରଦର୍ଶକ ହୋଇ ନିଜେ ପୁରି କ୍ଷେତ୍ରକୁ ବାହାରି ଆସିଲେ (ଯେବେ ତହିଁରେ ମଧ୍ୟ ଏ ଫଳ, ଯେବେ ତହିଁରେ ମଧ୍ୟ ସ୍ୱଦେଶ ଛାଡ଼ି ବିଦେଶରେ ଘୋର ଅପମାନ ସହିବାକୁ ହେଲା, ତେବେ ଆଉ ମୁଁ ବଞ୍ଚିବାର ଆଶା ରଖି ନାହିଁ, ଏହିଠାରେ ମାଟିର ଶରୀର ମାଟିରେ ମିଶିଯିବ । ଆଃ ! ଶ୍ରୀ ପାଦପଦ୍ମ !!! )

( ଲୋତକ ତ୍ୟାଗ ଓ ମସ୍ତକାବନତ କରି ବକ୍ଷାଦେ ଉପବେଶନ । )

ନେପଥ୍ୟେ—( ବେହେଲର ସ୍ୱର ସହିତ ଗୀତ । )

ରାଗିଣୀ ମହ୍ଲାର । ତାଳ ଏକତାଳୀ ।

ଅଖିଳ ଜଗତ ସଖି ପଦ୍ମାବତୀ ବୁଝିବୁ କେ ତୋର ଦୁଃଖ

ଆଜ ବୁଝିବୁ କେ ତୋର ଦୁଃଖ !

ଝଡ଼ରୁ ଥିଲୁ ଯାକୁ ସୁମରି ମରି,

ଫିଙ୍ଗି ଦେଲା ଦୂରେ ସେ ଦୂର କରି,

ଉଚିତ ମରଣ ଲଜ୍ଜାଧିକା ଧରି,

ଲୁଗୁଇ ପଙ୍କଜ-ମୁଖ । ୧ ।

ନବମଳ ତଳେ ପ୍ରଫୁଲ୍ଲ କମଳେ,

ପ୍ରସ୍ଫୁଟିତ ନବରଙ୍ଗେ ।

ସ୍ୱଗ୍ଗଣେ ସୁବାସେ ଚୌଦଗ ପ୍ରକାଶେ;
କମ୍ପିତ ପବନ ସଙ୍ଗେ ।
ସ୍ୱାଜହୃଦସ୍ୱ ପବନ ମନ୍ଦ
ବହୁଲ ପ୍ରଚଣ୍ଡ କର କ ଛନ୍ଦ,
ଯେ ଝୁରେ ତା ପାଇଁ ତା ସାଥେ ଦ୍ୱନ୍ଦ୍ୱ,
ଛିନ୍ନଭିନ୍ନ—ନଷ୍ଟ ସୁଖ । ୨ ।

ରଜା—ଆହା ! କ ମଧୁର ସ୍ୱର ! କ ମଧୁର ତାନ ! ଏ ଅମୃତମୟୀ ସଙ୍ଗୀତନଦୀ କେଉଁ ନିର୍ଝରୁ—ଆହା !—କେଉଁ ଚନ୍ଦ୍ରମାହୃଦରୁ ପ୍ରବାହିତ ହେଲ ! ଏ ଶୋକସନ୍ତପ୍ତ ହୃଦୟର କଥମ୍ପି ଶୀତଳ କରିବା କାରଣ କାହାର ମନ ଚଞ୍ଚଳ ହେଲ—ଆହା ! ନା—କଏ ଦେଖା ଯାଉ—ଆଉ କେବେ ଘଟିବ କ ନା—

[ ରଙ୍ଗଭୂମିରୁ ନିଷ୍କ୍ରାନ୍ତ ଓ କ୍ଷଣପରେ ପ୍ରତ୍ୟାଗତ ।

ଏକ ବଧାତାଙ୍କ ଛଳ ?—କାହିଁ କାହାଂଶକତ ଦେଖିପାରିଲି ନାହିଁ ! ମାଅ ପଦ୍ମାବତୀ ଦୁଃଖରେ ଦୁଃଖିତ ଥିବା ବଷୟର ଗୀତ ବଧାତା କାହିଁକି ମାୟା କରି ଶୁଣାଲେ ?—ପଦ୍ମାବତୀ କଏ ? ମନ ଶାନ୍ତ ହୋ, ଆପଣାକୁ ଆପେ ଚକ୍ଟି ପାରି ଗୁପ୍ତ ହୋଇଥା । ଝଟକର ଏପରି ମନୋଭାବ ପ୍ରକାଶ କରିବୁ ନାହିଁ । ତୁ ପଦ୍ମାବତୀଙ୍କ ଅନ୍ତରର ସଦ୍ଭାବ ଦେଖିଥାରୁ ବୋଲି ଏତେବେଳେ ବୋଲିବା ଅନ୍ୟାୟ; ଯେଉଁ ଦୃଢ଼-ପ୍ରତିଜ୍ଞା କରିଚୁ ତହିଁରୁ ତୁ ରଜା ହୋଇ ଅନ୍ତର ହେଲେ ଅଧୀନସ୍ଥ ଲୋକେ ତୋତେ ନନ୍ଦା କରି ସେହି ପାପର ଆଶ୍ରୟରେ କେତେ-କେତେ ଅନ୍ୟାୟ ସୃଷ୍ଟି ଘଟାଇବେ ! ପଦ୍ମାବତି ! ତୁ ହଜାର ଗୁଣବତୀ ହୋଇଥା; ହଜାର ଓଡ଼ିଶାରଜା ପ୍ରତ ମନ ରଖିଥା—ସେ ଗୀତରୁ ତ ମୋର ନନ୍ଦା ବ୍ୟକ୍ତ ହେଲ—ଯାହାହେଉ, ପଦ୍ମାବତି ! ତୋର ଆଉ ନିସ୍ତାର ନାହିଁ; ତୋର କପାଳ ଫଳାରେ ଘଟିବ ନାହିଁ—ତୁ ନିଶ୍ଚେ ଚଣ୍ଡାଳ ହାତରେ ପଡ଼ିବୁ !—ହା ଜଗନ୍ନାଥ ! ଏ ସବୁ ଚନ୍ତା ମୋର ବୃଥା ! ମୁଁ କ ଏବେ ଏହୁ

ଘୋର ଅପମାନରେ ପଡ଼ି ଦେବଙ୍କର ଅବଜ୍ଞାଭାଜନ ବାଧ ହେବ
କ୍ଷମା ଦେଇ ବିଷାଦ-ନରକରେ ପକାଇବ !—ତେବେ ଏଠାରୁ ଆଉ
ଉଠିବାକୁ ହେବ ନାହିଁ—ଆଉ ଜୀବନରେ ପ୍ରୟୋଜନ ନାହିଁ !!
(ପଶ୍ଚାତ ପ୍ରଣିପାତ ହେଲପ୍ରାୟ ପତନ । )

[ ଦାସର ପ୍ରବେଶ ।

ଦାସ—ମହାରାଜଙ୍କର ଜୟ ହେଉ !—ଉମ୍ଭରୁ ଏତେ ବ୍ୟାକୁଳ କାହିଁକି
ହେଉଛନ୍ତି ?

ରାଜା—( ଆର୍ତ୍ତସ୍ୱରେ ) ଦାସ ! ଆଉକି ଜୀବନ ରଖିବାର ଅଭିଳାଷ ଅଛି ?
ଯେବେ ଜଳେ ଜଗନ୍ନାଥ ଓ ବଳଭଦ୍ରଦେବଙ୍କ ବର୍ତ୍ତମାନରେ, ସେହି
ଅତୁଳ ପରାକ୍ରମୀ ତ୍ରିଭୁବନକର୍ତ୍ତା ଦେବଙ୍କ ସାହାଯ୍ୟରେ ଏ ଘୋର
ଅପମାନ, ପରାଜୟ ଓ ଦୁର୍ଦ୍ଦଶା ଏକାବେଳକେ ଘେରିବାକୁ ହେଲା,
ତେବେ ନିଶ୍ଚୟରେ ଦେବେ ଦାନକୁ ତ୍ୟାଗ କରିଛନ୍ତି—ଦୀନପ୍ରତି
ଦେବଙ୍କର ଶ୍ରଦ୍ଧା, ମମତା ବା ଦୟା ନାହିଁ ବୁଝିବାକୁ
ହେବ !!!—ଆମେ ଘୋର ପାପୀ—ଅତଏବ ଏ ପାପଜୀବନ
ଏହିଠାରେ ବିସର୍ଜନ କରିବୁଁ ! ( ନେତ୍ରକ ତ୍ୟାଗ )

ଦାସ—ଉପଯୁକ୍ତ ଅନୁତାପ, ଯଥାର୍ଥ ପ୍ରାୟଶ୍ଚିତ୍ତ ହେଉଛି ।—ମହାରାଜ !
ଆଉ ଚିନ୍ତା କରିବେ ନାହିଁ, ଦେବଙ୍କର ଆଜ୍ଞା ହେଉଛି ।

ରାଜା—କି—ଦାସ, କି ଆଜ୍ଞା ? ଏ ପାପୀପ୍ରତି ପୁଣି ମହାପ୍ରଭୁଙ୍କର କି
ଆଜ୍ଞା ?

ଦାସ—ମହାପ୍ରଭୁ ଆଜ୍ଞା ଦେଇଛନ୍ତି କାଲି ପ୍ରାତଃକାଳରୁ ପୁନର୍ବାର ଯୁଦ୍ଧ
କରନ୍ତୁ ।

ରାଜା—( ହଠାତ୍ ଉଠି ) କି ପୁନର୍ବାର କାଲି ପ୍ରାତଃକାଳରୁ ଯୁଦ୍ଧ କରିବାକୁ
ହେବ ? ଦେବ କି ଏବେ ମଧ୍ୟ ଭକ୍ତକୁ ପରୀକ୍ଷା କରୁଛନ୍ତି ?—
ଦେବଙ୍କର ଆଜ୍ଞା ଅବଶ୍ୟ କର୍ତ୍ତବ୍ୟ; ମାତ୍ର ହା ଦାସ ! ଆମର ଏପରି
କି ଦୋଷ ଥିଲା ଯେ ପ୍ରଥମେ ଏତେ ଅପମାନ ସହିବାକୁ ହେଲା ?

ଦାସ—ମହାରାଜ ! ସ୍ୱପ୍ନାଦେଶ ହେଲା ଯେ, ତମ୍ଭ ମାଣିକ୍ ସମ୍ମୁଖରୁ ଜଗନ୍ନାଥ ଓ ବଳଭଦ୍ର ଦେବେ ତୁମ୍ଭଙ୍କ ନିମନ୍ତେ ଯୁଦ୍ଧକୁ ଯାଉଥିବାର ଜାଣିପାର ଗର୍ବ ପ୍ରକାଶ କରି ତୁମ୍ଭକୁ ବ୍ରହ୍ମାଙ୍କଠାରୁ ମଧ୍ୟ ଯାହା ଶ୍ରେଷ୍ଠ ଜ୍ଞାନ କରିଥିଲେ ପ୍ରଭୁ ସେହି ହେତୁରୁ ପରାଜିତ ହୋଇ-ଥିଲେ । ବର୍ତ୍ତମାନ ତୁମ୍ଭ ଅନୁତାପରେ ସେ ସନ୍ତୁଷ୍ଟ ହୋଇ ଦାଲ ପୁନର୍ବାର ଯୁଦ୍ଧ କରି ତାକୁ ଜୟଚାର୍ଯ୍ୟ କରିବା ନିମନ୍ତେ କହିବାକୁ ଏଠାକୁ ପଠାଇ ଦେଲେ ।

ରାଜା—( ଦୀର୍ଘନିଃଶ୍ୱାସ ତ୍ୟାଗ କରି ) ଜୟ ଜଗନ୍ନାଥ ! ଦୀନର ହୃଦୟ ଶୀତଳ ହେଲା । ଯାହା ହୋଇଯାଉଛି, ତହିଁକି ଆଉ କି କଥା ? (ମାତ୍ର ସାମାନ୍ୟ ଭ୍ରମ ହେତୁରୁ ଯାହା ଫଳିଲା, ତାହା ଏ ଜୀବନଯାକ ଭୁଲିବୁ ନାହିଁ । ଏବେ ଦେଖ, ତୁମେ ଆସି ନ ଥିଲେ ଏ ଆଖି କାହୁଁ ମିଳଥାନ୍ତା ?)—ତୁମେ ତ ଆସିବାକୁ ଅଛନ୍ତୁ କି ଥିଲ ?

ଦାସ—ମହାରାଜଙ୍କର ଅନୁଗ୍ରହ !

[ ବିଦୂଷକର ପ୍ରବେଶ ।

ବିଦୂ—( ମହାନନ୍ଦେ ) ମହାରାଜ ! ଗଛରେ ତ ଫଳ ପାଚିଲାଣି ।

ରାଜା—ଓଃ ଭାରି ଆନନ୍ଦ ! କି ଫଳ ?

ବିଦୂ—ଫଳାହାର ।

ରାଜା—ତେବେ ତ ଅତି ସୁନ୍ଦର ଫଳଟିଏ । କାହାପାଇଁ — ଗଛ କଏ ?

ବିଦୂ—ଗଛ ତ ମୁଁ, ଖାଇବା ସ୍ୱୟଂ ଗୋପାଳଚୂଡ଼ାମଣି ।

ରାଜା—ତୁମେ ଗୋପାଳଚୂଡ଼ାମଣି କିପରି ହେଲ ?

ବିଦୂ—ମହାରାଜ ! ସେହି କଥାର ଟୀକାଟିଏ ତହିଁ ସଙ୍ଗେ ଲଗେଇବାର ଉଚିତ ଥିଲା; କଣ କରିବି ?—ଆନନ୍ଦରେ ଖେଳ ହୋଇ ଭୁଲିଗଲି ! ହାଃ ହାଃ ! ମହାରାଜ ଗୋପାଳ, ଅର୍ଥାତ୍ ଗୋରୁମାନଙ୍କ ଦୁଧରୁ ଉତ୍ପନ୍ନ ଦହି, ଚୂଡ଼ା ତ ଚୂଡ଼ା ଆଉ ମଣି ଅର୍ଥାତ୍ ଗୁଡ଼—ଏ

ଚନ୍ଦ୍ର ପଦାର୍ଥରେ ନିର୍ମିତ ଶରୀର ଯାହାର, ଅର୍ଥାତ୍ ଯେ ତାହା ବଡ଼ ଭଲ ପାଏ ସେ ଗୋପାଳଚୂଡ଼ାମଣି ! ହାଃ ହାଃ ହାଃ !

ଦାସ—( ଉଚ୍ଚହାସ୍ୟ ) ବଡ଼ ରହସିଆ !

ରାଜା—[ ହସୁ ହସୁ ] କି ଚମତ୍କାର ବୁଦ୍ଧି ! ଭଲ ତା ପାଚନ ବୋଲି ଜାଣିଲ କପରି ?

ବିଦୁ—ହଁ। ଆଉ କହିବାକୁ ଅଛୁ ? ଦାସ ଟିକିଏ ସଙ୍କେତ କରି ଦେଇଥିଲେ ଯେ ବୀର ଆଜି ସେନାଏକ ସମ୍ଭାଳ ହେବ ନାହାନ୍ତି—ଆନନ୍ଦାର୍ଣ୍ଣ-ନାବକେଳି କରୁଚନ୍ତି ପରା !

[ ବୀରବଳର ପ୍ରବେଶ ।

ହେଇ ବୀର ତ ଆସିଲେଣି ।

ରାଜା—ବୀର ! କି ସମ୍ବାଦ ?

ବୀର—ଶୁଭ ସମ୍ବାଦ; ଜମ୍ବୁରୁ ବଳେ ହଉ, ସୈନ୍ୟଙ୍କ ମନ କେମନ୍ତ ଗୋଟିଏ ଗୋଟିଏ ଦୁର୍ଗପରି ହେଇଚ ପ୍ରତ୍ୟକ୍ଷ ହେବ ।

[ ଗୁରୁଦେବଙ୍କର ପ୍ରବେଶ ।

ଗୁରୁ—( ମଙ୍ଗଳବାଦ କରି ) ମୃତ୍ୟୁଃଛେଦ ପିଶାଚସ୍ୟ ନରକେ ହ ଅଧୋଗତଃ !—ଆଉ ଭାବନା ନାହିଁ—ଜମ୍ବୁରୁ ତାବନ୍ତ୍ ମଙ୍ଗଳ ।

ରାଜା—( ତେବେ ବର୍ତ୍ତମାନ ଆସ, ସମସ୍ତେ ଯାଇ ସୈନ୍ୟମାନଙ୍କୁ ତତୋଽଧିକ ଉତ୍ତେଜିତ କରି ରଖିବୁଁ ।

ପଟକ୍ଷେପଣ ।

———

ଦ୍ୱିତୀୟ ଦୃଶ୍ୟ ।

କାଞ୍ଚିରାଜାନ୍ତଃପୁର ।

[ ପର୍ଯ୍ୟଙ୍କୋପରି ରାଜା କଳେବରେଶ୍ୱର ଓ ରାଣୀ ବଦ୍ୟୁଲ୍ଲତା ଆସୀନ । ]

ରାଜା—କି ହେବ ? ଦେଖୁଁ ଦେଖୁଁ ଦୁଇଟା ତରବାରି ଥାସି ଆମର ତାବନ୍ତ୍ ବଳକୁ କାଟି ପକେଇଲେ ! ଏବେ କି କରାଯିବ ! ଏ ପଦ୍ମାର ଦଶା

କି ହେବ !!—ହା ଇଷ୍ଟଦେବ ଗଣପତେ ! ଭକ୍ତର ଦଶା କି ଏହିଠାରେ ଶେଷ କଲ । ସେ ସ୍ୱପ୍ନାଦେଶ ଆମେ କପରି ମାନିଥାନ୍ତୁ? ସତ୍ୟ କରିଥିଲେ ମଧ୍ୟ ପଦ୍ମାବତୀକି ତ ଦେବାକୁ ପଡ଼ିଥାନ୍ତା—ହାହାହେଉ—ଯେତେବେଳେ ଅବହେଳା କରିଛୁ, ତହିଁର ସଜା ଘଟିବ ଘଟ !—ହତଭାଗ୍ୟର ଭାଗ୍ୟ କଦାପି ସୁଳକ୍ଷ ନୁହେ ! ପଦ୍ମାର କଥା ଶୁଣି ଆମର ଅନ୍ତରାତ୍ମା ଦଗଧ ହେଉଛି ! ଏବେ ପଦ୍ମାକୁ ଯେଉଁ ଅଦୃଶ୍ୟକୁ ପଳାଇ ଗଲେ କି ପଦ୍ମା ଶତ୍ରୁ ହାତରୁ ମୁକ୍ତି ପାଇବ ?—ହା ଗଣଦେବ ! ହା ଭାଗ୍ୟ ! ଆମରି ପାଇଁ ପଦ୍ମାକୁ ଏତେ କଷ୍ଟ ସହିବାକୁ ହେବ ! ଏବେ ଉପାୟ କି ! ନାରକୀ ଏହିକ୍ଷଣି ତ ଲୋକ ପ୍ରେରଣ କରିବ !—ହା ହତଭାଗ୍ୟ !—ହା, ହତଭାଗିନୀ ! ! ! (ବାକଲେ ଅଶ୍ରୁପାତ,)

ରାଣୀ—( ଅଶ୍ରୁପାତ ଓ ଅଞ୍ଚଳରେ ଅଶ୍ରୁ ପୋଛି ପୋଛି ) ମୋର ପଦ୍ମା ! ହା ହା ! କାନ୍ଦୁ କାନ୍ଦୁ ପଦ୍ମାବତୀର ପ୍ରବେଶ ।

ରାଜା—( ଉଚ୍ଚ କ୍ରନ୍ଦନ ସ୍ୱରେ ) ଏହି ମୋର ପଦ୍ମା—ମା ମୋର !—ମୂର୍ଚ୍ଛିତା । )

ରାଣୀ—( କାନ୍ଦି କାନ୍ଦି ଉଠୁ ଉଠୁ ) ଏଣିକି ମା—ମୋର ପଦ୍ମା ! ( ମୂର୍ଚ୍ଛିତା । )

ପଦ୍ମା—ବାପା—ମା ! (ମୂର୍ଚ୍ଛା ଓ ପତନ ।)

ନେପଥ୍ୟେ—ତୃପ୍ତି, ଦୌଡ଼—ଦୌଡ଼—ଶୀଘ୍ର—ପାଣି !

[ ଜଳପାତ୍ର ହସ୍ତେ ଶଶିକଳା, ସୂର୍ଯ୍ୟବାଳା ଓ ଭଦ୍ରାର ପ୍ରବେଶ ଓ ସମସ୍ତଙ୍କର ମୂର୍ଚ୍ଛାପନୋଦନ କରିବା ।

ପଦ୍ମା—ଶଶି ! ତୃପ୍ତି ! ଭଦ୍ରେ ! ମୋର ଏହିଠାରେ ଶେଷ ହେଲ !!—ମନେ ରଖିଥିବ; ମୋର ପ୍ରିୟସଖିମାନେ । ( ଶଶୀର କୋଳକୁ ଆଉଜି କାନ୍ଦିବା । )

ଶଶି, ସୂର୍ଯ୍ୟ ଓ ଭଦ୍ରା — (ପଦ୍ମାଙ୍କୁ ଘେରି ବସି କାନ୍ଦୁ କାନ୍ଦୁ ବୋଧକରିବାର)
ରୁନ୍ଦୁଥ ରୁନ୍ଦୁଥ !!

ରାଜା—( ବିକଳେ ଅଧୋବଦନେ ଉପବେଶନ । )

ରାଣୀ—ଆହା ! ପଦ୍ମା ! ମା ମୋର ! ମୋ କୋଳକୁ ଆ ! (ହସ୍ତ ପ୍ରସାରଣ )

ପଦ୍ମା—( ସ୍ୱଗତ ) କି କରିଯିବ ! ଏବେ ପ୍ରାଣେଶ୍ୱରଙ୍କର ଦେଖା ପାଇଲେ
ଭଲ ଅନୁନୟ ବିନୟ କରି କହନ୍ତିବ ! ମୋ ବନା ବୃଦ୍ଧ ପିତାମାତାଙ୍କର
ଦୁଃଖର ଆଉ ଅବଶେଷ ରହିବ ନାହିଁ !!

ରାଣୀ—ଆ ମା ମୋର ! ପ୍ରାଣ ବିକଳ ହେଉଛି !

ପଦ୍ମା—( ବିକଳେ ଉଠି ମାତୃକୋଡ଼କୁ ଯାଉଁ ଯାଉଁ )
[ହଠାତ୍ ସୈନିକ ସୁରିକଣ୍ଠର ବ୍ୟସ୍ତଭାବରେ ପ୍ରବେଶ ।

ପ୍ର, ସୈନ୍ୟ — ଏହି ପଦ୍ମାବତୀ, ଧର ଶୀଘ୍ର ।

ଦ୍ୱି, ସୈ—ହଁ ଚାଲ, ଶୀଘ୍ର ଘେନି ଚାଲ । ( ପଦ୍ମାବତୀଙ୍କି ଧରିବାରେ
ଉଦ୍ୟତ । )

ରାଜା—( ଅରେ ସୈନିକଙ୍କୁ ଦେଖି କ୍ରୋଧଭାବରେ ) କାହିଁ ତରବାରି—
( ଉଠୁ ଉଠୁ ମୂର୍ଚ୍ଛିତ )

ରାଣୀ—ଏ କଣ—ଏ କଣ !! (ଉଠୁଁ ଉଠୁଁ ମୂର୍ଚ୍ଛାରେ ପତନ । )

ଶଶି, ସୂର୍ଯ୍ୟ ଓ ଭଦ୍ରା—ଏ କଣ ହେଲା । (ବିକଳେ ଘୋର କ୍ରନ୍ଦନ ।)

ସମସ୍ତ ସୈନିକ — ଜୟ ଜଗନ୍ନାଥ ଜୟ । ପଦ୍ମା ବନ୍ଦିନୀ । ( ପଦ୍ମାବତୀଙ୍କୁ
ଧରିବାକୁ ଯିବାର । )

ପଦ୍ମା — ( ଉଚ୍ଚ ବିକଳ ସ୍ୱରେ ) ହା ବିଧାତଃ ! ହା ପିତା ମାତା — ଅବଳା
ଏକମାତ୍ର କନ୍ୟା — ତୁମେମାନେ କପରି — ମୂର୍ଚ୍ଛା ଓ ପତନ । )

ସୈନିକ—(ତଟସ୍ଥେ ଅଲଗା ହୋଇ ଦଣ୍ଡାୟମାନ ।)

ଶଶି, ସୂର୍ଯ୍ୟ ଓ ଭଦ୍ରା — ଏ କଣ, ଏ କଣ ! (ପଦ୍ମାବତୀର ମୂର୍ଚ୍ଛାପନୋଦନ
କରିବା ।)

ପଦ୍ମା—(ମୂର୍ଚ୍ଛାରୁ ଉଠି) ଶଶି ! ସୂର୍ଯ୍ୟ ! ପିତାମାତା – (ରୋଦନ ।)

ପ୍ର, ସୈ – ଧର, ଧର, ଗୁଳ ।

ସମସ୍ତେ – ଗୁଳ । ( ଜଣେକ ସେନା ପଦ୍ମାବତୀଙ୍କୁ ଧରି ଉଠାଇବାର ଓ ଅନ୍ୟ ସମସ୍ତେ ତାଙ୍କୁ ଘେରି ପ୍ରସ୍ଥାନ କରୁ କରୁ – )

ପଦ୍ମା – ସୈନିକ ! କ୍ଷମା କର, ଅବଳାର ହାତ ଛାଡ଼ି ଦିଅ ! – ( ଉଚ୍ଚରେ ) ନୃଶଂସ ! ଏ ପବିତ୍ରଶରୀରର ସ୍ପର୍ଶ କଲୁ – ଯେ ଅନିଷ୍ଟ ହେବ ଦେଖିବୁ ପ୍ରତ୍ୟକ୍ଷ ! ହାତ ଛାଡ଼ି ଦେ ! [ହାତ ଝିଙ୍କି ଆଣିବାର] ଅରେ ପିତା-ମାତାଙ୍କୁ ଦେଖି ନଏଁ ! ଶଶି ! ସୂର୍ଯ୍ୟ ! ଭଦ୍ରେ ! କାହିଁକି ମୋ ସଙ୍ଗରେ ଥାଅତ ! ମୁଁ ଦୁଃଖିନୀ, ବନ୍ଦିନୀ, ହତଭାଗିନୀ ! – ମୋର ଦୁଃଖରେ ତୁମେମାନେ କାହିଁକି ଏମନ୍ତ ବିକଳ ହେଉ ଥାଅତ ! ଭଗବାନ ଭଲ କଲେ ସତକୁ ସବୁ କଥା ! ଏବେ ଦେଖୁନାହୁଁ ପିତା ମାତା କି ଅବସ୍ଥାରେ ପଡ଼ିଛନ୍ତି ! – ତାଙ୍କର ମୂର୍ଚ୍ଛା ଭଙ୍ଗ କରି ତାଙ୍କୁ ଆଶ୍ୱାସନା କର ! ଆଉ କଏ ଅଛୁ ! – ସମସ୍ତେ ଗଲେ ସେ କି ଜୀବନ ରଖିପାରିବେ !! [ଲେଉଟିବା ଚେଷ୍ଟା ଓ ପରେ ଶଶିକଳାର ଚିବୁକ ଧରି ] ଶଶି ! କହିବ ମୋପାଇଁ ସେମାନେ ଦୁଃଖ କରିବେ ନାହିଁ – ଉପରେ ପରମପିତା ପରମେଶ୍ୱର ଅଛନ୍ତି ! ଯାଅ ସଖି, ମୋର ସମସ୍ତଙ୍କୁ ଅଭିବାଦନ – ମଙ୍ଗଳାଳିଙ୍ଗନ !

[ ସମସ୍ତଙ୍କୁ ଧରି ଥରେ ଥରେ ବକ୍ଷେ ଆଲିଙ୍ଗନ । ]

ଶଶି – (ଆଲିଙ୍ଗନ ସମୟରେ କାନ୍ଦୁ କାନ୍ଦୁ) ସଖି, ଯାଉଛ !

ସୂର୍ଯ୍ୟ—( ତଦ୍‌ବତ୍ ) ସଖି ସତେ ଯାଉଛ !

ଭଦ୍ରା—(ତଦ୍‌ବତ୍ ପଦ୍ମାବତୀର ଚିବୁକ ଧରି) ସତେ ଏମନ୍ତ ଅନ୍ଧାର କରି ଯାଉଛ ! ବଜ୍ରରେ ବାଜିଲା ହେଣ୍ଟ – ଅନାସ୍ଥା ହେଲେ କି ଗୋପନାସ୍ତ ! (କାନ୍ଦେ କାନ୍ଦି ରଖି) ମୋର ପଦ୍ମା ! ଆମେମାନେ ବଞ୍ଚିବା କିପରି ! ବିଧାତଃ !

ପଦ୍ମା—ଆଅ ଭଦ୍ରେ ! ଶଶି, ମୋର ପିତାମାତାଙ୍କୁ ଶାନ୍ତ କରିବ – ତାଙ୍କୁ ମୋର ଦଣ୍ଡବତ କହିଦେବ (ମୁଣ୍ଡ ନୁଆଁଇବା ସମୟରେ ହଲକାଏ

ଲୁଦ୍ର ପଞ୍ଜାବାର ଓ ତାହା ପୋଚୁ ପୋଚୁ)—ମୁଁ ଅରେ ତାଙ୍କ ଭଲକଣ ଦେଖିପାରିଲି ନାହିଁ !! ଶଶି ! ମୋତେ—ଏ ପ୍ରିୟ ସଙ୍ଗୀକ —ମନେ ରଖିଥିବ ! ମୋର ଏଠାର ତାବନ୍ତ ସୁଖର—ଖେଳ ର— ସୁଆଗର ଦ୍ରବ୍ୟ ଯତନରେ ରଖିଥିବ !—ମୁଁ ପର ରୂମର !!! ସଖି ହୃଦ ! ଭଦ୍ରେ ! ମୋତେ କ୍ଷମା କର—ଜୀବନରେ ଥିଲେ ଅବଶ୍ୟ ଦେଖା ହବ !!—ଆଃ ! (ଅଞ୍ଚଳେ ଲୁଦ୍ର ପୋଚୁ ପୋଚୁ ସେନା-ପରିବୃତା ହୋଇ ପ୍ରସ୍ଥାନ ।)

ଭଦ୍ରା—ଶଶି ! ଆଉ ଦେଖିଲେ କଣ ହବ ! ସେ ତାଙ୍କ ମଢ଼ିରେ ଛୁଡ଼ାହୋ ! ହୃଦ, ଅତ ଶୀତଳ ପାଣି ଆଣ—ଶୀଘ୍ର ! [ସୂର୍ଯ୍ୟବାଳାର ପ୍ରସ୍ଥାନ ।]

ଶଶି—(ରଜା ଓ ରାଣୀଙ୍କ ମଧ୍ୟରେ ପର୍ଯ୍ୟଙ୍କ ତଳେ ଦଣ୍ଡାୟମାନ ଓ କ୍ରନ୍ଦନ-ସ୍ୱଭାବଲମ୍ବନ । )

ଭଦ୍ରା—ଶଶି ! ମୋର ହୃଦ ଫାଟି ଯାଉଚି ! - (ଗୀତ)

ରାଗ ଶଙ୍କରାଭରଣ । ତାଳ ଯନ୍ତ୍ର ।

ଜୀବନେ ଜୀବ କି ମିଶିବ !

କପଟ ପରାଣ ଭବେ ବଞ୍ଚିବ—ରେ ପରାଣ ସଖି !

ଢାଳ ହୋମାଗ୍ନିରେ ଘୃତ ଢଉଥିଲେ,

ଅନଳ ତେଜେ କି ଜ୍ୱାଳା ଜ୍ୱଳିବ—ରେ ପରାଣ ସଖି ! ୧ ।

ବଞ୍ଚେ ଜଳାଠାରୁ ମରବା ପୁଷ୍ପରୁ,

ଛଉଙ୍ଗ ସଙ୍ଗେ କେ ସୁଖ ଲଭିବ—ରେ ପରାଣ ସଖି ! ୨ ।

ଛିଣ୍ଡାଇଲେ ନବ ଶ୍ୟାମଳ ପଲ୍ଲବ,

ଶୁଣି ନ ଯାଇ କି ସୁଖେ ରହିବ—ରେ ପରାଣ ସଖି ! ୩ ।

ପ୍ରାତେ ରାଜକନ୍ୟା; ସନ୍ଧ୍ୟାରେ କି ଅନା !

ଫୁଲ ସୁଖ ଆହା ସବୁ ଫଳିବ—ରେ ପରାଣ ସଖି !! ୪ ।

[ ସୂର୍ଯ୍ୟବାଳାର ଜଳପାତ୍ର ହସ୍ତେ ପ୍ରବେଶ ]

ଭଦ୍ରା—ଦେଖ, ଦେଖ ଶୀଘ୍ର ।

ଯବନିକା ପତନ ।

# ପଞ୍ଚମ ଅଭିନୟ

## ପୁରୀ ।

### ପ୍ରଥମ ଦୃଶ୍ୟ । ବୈଠକ ଘର

[ ରାଜା ପୁରୁଷୋତ୍ତମ ଦେବ, ମନ୍ତ୍ରୀ ବିଦ୍ୟାନିଧି, ବିଦୂଷକ; ବୀରବର, ଗୁରୁଦେବ, ଦାସ ଓ ସଭାସଦ୍‌ବର୍ଗ ଆସୀନ । ]

ବିଦୂ—ମହାରାଜ ! ଆଜି ଏ ସ୍ଥାନର କି ଅପୂର୍ବ ଶୋଭା ହୋଇଛି ! ଜନ୍ମ ଚଳ ପୂର୍ବେ ଏରୂପ ଅପୂର୍ବ—ଶ୍ରୀଧାରୀ ବୈଠକ ଦେଖିଛି କି ନା ସନ୍ଦେହ ! ଏ ସୁନ୍ଦର ଶଯ୍ୟା, ଏ ସୁନ୍ଦର ଝାଡ଼ ଲଣ୍ଠନ—ମହାରାଜ ! ଅତି ଅଳ୍ପ ଲୋକଙ୍କ ଭାଗ୍ୟରେ ଦେଖିବାକୁ ଥାଏ ! ପୁଣି ଶ୍ରୀମୁଖରୁ ଆଜି ଯେଉଁ ଶ୍ଳୋକ ଦେବା ହୋଇଥିଲେ, ମଣିମା ! ସେହି ହେତୁ ଏଥିର ଶୋଭା ଅତ୍ୟନ୍ତ ଅଧିକ ହୋଇଛି ! ··ହୃଦୟ ଶାନ୍ତ ଓ ଚିରକାଳ ଜମନ୍ତେ ଜୟନ୍ତ !

ବୀର—ତେବେ ତ ପୂର୍ଣ୍ଣ ଗ୍ରାସ ହୋଇଛି !

ମନ୍ତ୍ରୀ—ସୂର୍ଯ୍ୟଗ୍ରହ ଲୁଚି ରହିଛି—ପୃଥିବୀ ପରା ଅନ୍ଧକାର !

ବିଦୂ—ହଁ ମନ୍ତ୍ରି ଏ,—ଦେଖ, ପୂର୍ଣ୍ଣଗ୍ରାସ ହେଲାରୁ ସିନା ଏ ବୈଠକ, ଏତେ ଆଡ଼ମ୍ବର; ଏତେ ଚମତ୍କାର ଆଲୁଅ !—ଆଉ ତୁମ ବୁଦ୍ଧିଟା ମୁଣ୍ଡରେ ବୁଲୁଛି ଯେ, ତାହାପାଇଁ ତାକୁ ଅନ୍ଧାର ଦିଶିଲା—ଗୋଡ଼ରେ ବୁଲୁଥିଲେ ସିନା ଭଲ କରି ଦେଖି ପାରନ୍ତା !—ହାଃ ହାଃ ହାଃ !

ଗୁରୁ—ନା ହୋ ନଟବର ତୁମର ବୁଝିବାର ଭ୍ରମ; ପୂର୍ଣ୍ଣଗ୍ରାସବେଳେ ପୃଥିବୀ ଅନ୍ଧକାର ନ ଥିଲା କଣ ? ଗ୍ରାସ ସରିଲାରୁ, ଗ୍ରହଣ ଛାଡ଼ିଲାରୁ ସିନା ସୂର୍ଯ୍ୟଙ୍କର ଏ ପ୍ରଚଣ୍ଡ ତେଜ ବାହାରିଲା !

ମନ୍ତ୍ରୀ—ଆଉ କଣ ? ଏଥର ନଟବରଙ୍କର ପରାଜୟ !

ବିଦୁ—ନ ହେବ କାହିଁକି ? ଗୁରୁଦେବଙ୍କର ଆମର ଅଗାଧ ବିଦ୍ୟା—ହାଃ ହାଃ ! ତାଙ୍କ ମହିମାର ଆଉ ସୀମା ଅଛି ? ଯେ ପୁଷମାସରେ ଦଶ ବଢ଼େଇ ଦିଅନ୍ତି ତାଙ୍କ କଥା କଣ ?

ରାଜା—ପ୍ରକୃତ । ଗୁରୁଦେବଙ୍କର ସେ ଅଗୋଚର ମହିମା ଆଗେ ଅଜ୍ଞାତ ଥିଲି । ଦେଖ ଏହି ସଙ୍କଟ ସମ୍ମୁଖରେ ଆମ୍ଭେ—ସେ ଯୋଗବଳ ଆମ୍ଭର ମାନ ଭୟାନକ ବିପତ୍କାଳରେ ରକ୍ଷା କରିଛନ୍ତି—ଆମ୍ଭେ ସନ୍ତୁଷ୍ଟ ହୋଇ ତାଙ୍କୁ ବଳପୁର ନାମକ ଗ୍ରାମ ପୁରସ୍କାରସ୍ୱରୂପ ବଂଶପରମ୍ପରା ଭୋଗ କରିବା ନିମନ୍ତେ ଦାନ କଲୁଁ ଏବଂ ଆଜିଠାରୁ ତାଙ୍କର ନାମ ଗୋଦାବରୀ ମିଶ୍ର ବୋଲି ବିଖ୍ୟାତ ହେଉ ।

ଗୁରୁ—ଏହା ମହାରାଜଙ୍କୁ ଶୋଭା ପାଏ ।

ମନ୍ତ୍ରୀ—ମହାରାଜ ! ସେ ଅପୂର୍ବ ଘଟଣା ଆମମାନଙ୍କ ମଧ୍ୟରେ ଅନେକେ ଅବଗତ ନାହାନ୍ତି; କାହାରିକି ଆଦେଶ ଦେଲେ ସେ ଆନୁପୂର୍ବିକ ବର୍ଣ୍ଣନା କରିବେ ।

ରାଜା—ସେ ତ ବଟେ । ଗୋଦାବରୀ ଅବଶ୍ୟ କାଞ୍ଚିପୁରକୁ ବହୁ ଦୂର । କିଏ ଜାଣିଥିଲା ଯେ ଯେଉଁ କାଞ୍ଚିରାଜାର ସେନାଏ ଗୋଟିକରୁ ହତ ହୋଇଥିଲେ ସେ ପୁଣି ଲକ୍ଷାବଧି ସେନା ଏକତ୍ର କରି ଏତେ ଶୀଘ୍ର ଆମର ଅନୁଗମନ କରିବ ! ଧନ୍ୟ ଅପତ୍ୟ ସ୍ନେହ ! ଆମେ ଏତ ସାହସରେ ବିନା ବୀରବଳ ଓ ସୈନ୍ୟମାନଙ୍କୁ ପଦ୍ମାବତୀଙ୍କ ରକ୍ଷାର୍ଥେ ଆଗେ ଆଗେ ବିଦାୟ କରି ଦେଇଥିଲୁଁ ?—ସବୁ ଜଗନ୍ନାଥଙ୍କ କୃପା !

ବିଦୂ—ମହାରାଜ ! ଯେତେବେଳେ ଗୁରୁଦେବ ଅସ୍ତବ୍ୟସ୍ତ ହୋଇ ସମ୍ବାଦ ଦେବାକୁ ଆସିଲେ ମୁଁ ମନେ କରିଥିଲି ବା କାହା ମୁଣ୍ଡରେ କାଉ ଝଡ଼ିଥିବ ଯେ ଗୁରୁଦେବ ଲଢ଼ ଅଥୟ ହେଉଛନ୍ତି ! ତେତେବେଳକୁ କାଞ୍ଚିର ସେନାଏ ଆସି ଗୋଦାବରୀର ଅପର ପାରି ଲଙ୍ଘି

ପକାଉଥିଲେ । ଯେତେବେଳେ ମହାରାଜ ନିତାନ୍ତ ଚିନ୍ତିତ ହୋଇ କହିଲେ ଯେ 'ଗୁରୁଦେବ ଆଉ ରକ୍ଷାର ଉପାୟ ନାହିଁ—ତ୍ୟାଗେ ଜନେ ରଖିଥିଲେ, ଏବେ କୃଷ୍ଣେ ରଖିଲେ ରଖନ୍ତୁ ।' ମିଶ୍ରେ ବି 'ତଥାସ୍ତୁ' କହି ରହିଗଲେ । ମୁଁ ମନେ କଲି ଏ ବୁଢ଼ା ବ୍ରାହ୍ମଣ କଣ ଟାହୁଲି କରୁଛି କି ! ପରେ ଯାଇଁ ଦେଖିଲି ଯେ ଗୁରୁଦେବ ତେଜା ଆସନ ପକାଇ ଗୋଟିଏ ବରଗଛ ତଳେ ଆଖି ବୁଜି ଜପ କରିବାକୁ ବସିଲେ । ତେଣେ ତ କାଞ୍ଚିସେନାଏ ବାଦ୍ୟ କୋଳାହଳରେ ଦଉଡ଼ି ଆସୁଥାନ୍ତି; ମୁଁ କହିଲି, ଗୁରୁଦେବ କଣ ଫୋପଡ଼ା ମାରି ଆକାଶ ଭାଙ୍ଗିବେ କି ?—ନା ମହାରାଜ ! କଣ କହିବି ଯେତେବେଳେ ସେ ସେନାଏ ଆସି ନଈ ଅଧ ପାରକୁ ହେଲେ, ତେଣେ ଅକସ୍ମାତ ଲାଗିଗଲା, ବଢ଼ିଲା ସେ ନଈ, ସେତ ଗୋଟିକ ଗୋଟି ସମସ୍ତଙ୍କ ନଷ୍ଟ କରିପାଇଁ ଭାସି ଚାଲିଗଲେ ! କାଞ୍ଚିରାଜା ତ ହା ଦେଖି ତେଣେ ପଳେଇଛି—ଆଉ ଦଣ୍ଡେ ଥିଲେ ସେ ବି ସମୁଦ୍ରରେ ଘର କରି ରହିଥାନ୍ତା । ମିଶ୍ରେ କହିଥିଲେ ଯେ ମୋତେ ବେଳେ ପାଣି ହେଲେ ଡାକି ଦବ । ବେଳେ ପାଣି ହେଲାବେଳକୁ ନା କାଞ୍ଚିରାଜା ନା ତାର ସେନାଏ—କେହି ନାହିଁ, ଯେମିତି ଆଗେ ଥିଲା ସେମିତି । ମୁଁ ମିଶ୍ରଙ୍କୁ ଡାକିଦେଲି, ସେ ଉଠି ଚୁଡ଼ା-ହେଲରୁ ପୁଣି ନଈ ଯେମିତି ଥିଲା ସେହିପରି ! ମହାରାଜ ! ଏତେ ଅଦ୍ଭୁତକାଣ୍ଡ କାହିଁ ଦେଖା ନାହିଁ !

ମନ୍ତ୍ରୀ— ଅତୀବ ଆଶ୍ଚର୍ଯ୍ୟ !!

ରାଜା— ଭଲ, ତେବେ ଦାସ, ସେ ଦ୍ୱାର ରୁଦ୍ଧ ହେଲା ?

ଦାସ— ମନ୍ତ୍ରିଙ୍କ ସାକ୍ଷାତରେ ରୁଦ୍ଧ କରି ଦିଆ ହୋଇଛି ।

ମନ୍ତ୍ରୀ— ଆଜ୍ଞା ମହିମା !

ଦାସ—-ମହାରାଜ ! ଏ କାଞ୍ଚି ନଗ୍ରେଇର ଏତେ ମଣି ମୁକ୍ତା ସବୁ ଭର୍ତ୍ତି କରି ଦ୍ୱାର କାହିଁକି ବନ୍ଦ ହେଲା କିଛି ବୁଝିପାରୁ ନାହିଁ ।

ରାଜା—ଦାସ, ବୃଦ୍ଧ ନାହିଁ, ଆମର ବର୍ତ୍ତମାନ କି ଅଭାବ ଅଛି ? ଯେ ଦ୍ୱାର ରୁଦ୍ଧ ହେଲା ଯେ ଯଦି କେବେ ଦୈବ-ଦୁର୍ବିପାକରୁ କୌଣସି କାଳରେ ହଠାତ୍ ଘୋର ଦୁର୍ଦ୍ଦଶା ଆସି ଉପସ୍ଥିତ ହେବ ଯେ ଆଉ ଉଦ୍ଧାର ଉପାୟ ନାହିଁ, ଲୋକେ କେତେବେଳେ ସେ ଦ୍ୱାର ଭାଙ୍ଗିବେ। ଏହି କଥାତ ପ୍ରଭୁଙ୍କ ସମକ୍ଷରେ କାମନା କରାଯାଇ ଏ ସମ୍ପଦନର ଉତ୍ସବ ହେଉଛି !

ବଟୁ—ମାଫ ମହାରାଜ ! ଏ ଲୋକ ବ୍ରାହ୍ମଣେ ମନେ କରଥିଲେ ଛଡ଼ିରୁ ପୁଣି ଗଣ୍ଡାଏ ଗଣ୍ଡାଏ ପାଉଥାନ୍ତେ । ହାଃ ହାଃ !

ଦାସ—ହଁ ତୁମକୁ କଣ ନ ଆସେ ?

ବଟୁ—ମହାରାଜ ଏତେ ବଡ଼ ଉତ୍ସବଟାଏ କଲେ, ଯେବେ ଭୋଜ ଦେଇ ନ ଥାନ୍ତେ ତେବେ ପରା ବଟୁଷବଙ୍କର ପାଦପଦ୍ମ ଏଠି ପଡ଼ି ନ ଥାନ୍ତା ।

ରାଜା—କଣ, ସେ ଘର କଥାକୁ ତୁମେ ଏତେ ଉତ୍ସବରେ ମିଶି ନ ଥାନ୍ତ ?

ବଟୁ—ମହାରାଜ ! ଛନ୍ଦ କାହିଁକି—ସେତ ସାର; ଯଥା, ମୃତ୍ତସ୍ନାନଂ କ୍ଷୌରଭୋଜନଂ ! ମୁଁ ପରା ଆଗରୁ ପେଟପରଷ୍ଟାର କରି ରଖିଥିଲି— ହାଃ ହାଃ ହାଃ ।

ମନ୍ତ୍ରୀ—ଏବେ ପୃଥିବୀ ଶାନ୍ତ ହେଲା !

ବଟୁ—ତୁମେ ବ ! ହାଃ ହାଃ !

ରାଜା—ଭଲ—ଦାସ ଅନ୍ୟତ ଏକ କଥା ଅଛି—ସେ ଭଣ୍ଡଗଣେଶ ଆଉ ସାକ୍ଷୀଗୋପାଳଙ୍କ ମୂର୍ତ୍ତି ସ୍ଥାପନ କରିଦେଲଣି ତ ?

ଦାସ—ଆଜ୍ଞା ମହିମା ! ଭଣ୍ଡଗଣେଶଙ୍କୁ ବିମଳା ଦେଈଙ୍କ ସମ୍ମୁଖରେ ଆଉ ନରସିଂହ ଦେବଙ୍କ ପଛରେ ସ୍ଥାପନ କରିଦେଲୁଁ ଯେ ସେ ସ୍ଥାନକୁ ତାହା ଗଛଇ ହେଉଗଲା । ଏବେ ସମସ୍ତେ ଦେଖି ତାର ଭଣ୍ଡତାର ପରିଚୟ ପାଇବେ । ଆଉ ସେ ଗୋପାଳ ମୂର୍ତ୍ତିଙ୍କ ମଧ୍ୟ କଟକେ ଯାଇ

ସନ୍ଧ୍ୟାବାଟୀଠାରେ ରକ୍ଷି ଅଛନ୍ତି । ଆମର ଶିଳ୍ପକାରମାନେ ବ ନିପୁଣ
—ମହାରାଜ ! ଅଦ୍ଧ ଅଳ୍ପଦିନ ମଧ୍ୟରେ ସେ ଯେଉଁ ଦେଉଳଟି ସେଠି
ଗଢ଼ିଛନ୍ତି ତା ଦେଖିଲେ ପର୍ଯ୍ୟ ଆଶ୍ଚର୍ଯ୍ୟ ହୋଇଯିବେ । ଯେ ଭାଗ୍ୟ-
ରାଜପୁରର ଦକ୍ଷିଣଦ୍ୱାରରେ ବିରାଜ ଥିଲେ ସେ ଏବେ ଭାଗ୍ୟ
ନଟେଶ୍ୱରଙ୍କ ସାକ୍ଷୀ ହୋଇ ସେଠି ସୁନ୍ଦର ଅବସ୍ଥାନ କରିଛନ୍ତି !

ରାଜା—ଉତ୍ତମ ହୋଇଛି । ଏହାଭଳ ଚତୁରତା ପ୍ରଶଂସନୀୟ !—ମନ୍ତ୍ରିନ୍ !
ଆଜ ନଗରବାସୀଙ୍କର ଆମୋଦାର୍ଥ କ ନୂତନ ଉଦ୍ୟୋଗ
କରିଛ ?

ମନ୍ତ୍ରୀ—ମହାରାଜ ! ନଗରର ସ୍ଥାନେ ସ୍ଥାନେ ନୃତ୍ୟାମୋଦ ଲଗିଅଛି ।

ବଟୁ—ତେବେ ନୀଳାଚଳ ଆଜ୍ଞ ମର୍ତ୍ତ୍ୟରେ ନ ଥିବ ପରା ?

ମନ୍ତ୍ରୀ—ତାହୁ ଏକା । ଜଗନ୍ନାଥଦେବଙ୍କ କୃପାବଳରୁ ତାହା ଅମରାବତୀରୁ
ମଧ୍ୟ ଉଚ୍ଚ ପଦ ପାଇଛି ! ଏ ସନ୍ତୁଷ୍ଟ ସମସ୍ତେ ଆଜ ଯେପରି
ଆନନ୍ଦରେ ମତ୍ତ ଅଛନ୍ତି—ଗତ ଛ ଦିନରୁ କଲ ଛାମୁ ଆଜ୍ଞା କମେ ଆଜ
ଏଠାର ଆମୋଦର ଯେଉଁ ଉଦ୍ୟୋଗ ହୋଇଛି ତହିଁକ କେବଳ
ଛାମୁରୁ ଅନୁମତିର ଅପେକ୍ଷା ।

ରାଜା—କ ଉଦ୍ୟୋଗ ହୋଇଛି—ନର୍ତ୍ତକେ ଆସିଚନ୍ତି କି ? ତାଙ୍କୁ ଡାକ
ଆଣ ।

ବଟୁ—ହଁ—ତ୍ୱରସ୍ୱ ଶୀଘ୍ରମ୍ !

ମନ୍ତ୍ରୀ—ଦ୍ୱାରୀ—

ନେପଥ୍ୟେ—ଅବଧାନ !

[ ଦ୍ୱାରୀର ପ୍ରବେଶ ।

ମନ୍ତ୍ରୀ—ନର୍ତ୍ତକଙ୍କୁ ଡାକ ଦିଅ ।

ଦ୍ୱାରୀ—ଯେ ଆଜ୍ଞା !                                                    [ ପ୍ରସ୍ଥାନ ।

ବଟୁ—( ସଟାଙ୍ଗ ହେଇ ବସି ଅଣ୍ଟାରେ ହାତ ଦେବାର । )

ରଜା—ଆଶ୍ଚର୍ଯ୍ୟ ! ଏପରି ଉଦ୍ୟୋଗ କାହିଁକି ?

ଗୁରୁ—ନାଚବେ ଅବା ?

ବଟୁ—ହୁଁ ହୁଁ, ପେଟରେ ନଉଣାଏ ବୁଦ୍ଧି ଅଛୁ—ବିଦ୍ୟାରତ୍ନ ବୋଲଉଛନ୍ତିଏ ! ହାଃ ହାଃ ! ମହାରାଜ ! ନାଚ ଦେଖିବା ପାଇଁ ବାବୁ ହୋଇ ବସିଚ—କଣ ଦେବ ବୋଲି ଅଣ୍ଟାରେ ହାତ ପକଉଅଛ—ହାଃ ହାଃ !

[ନର୍ତ୍ତକଦ୍ୱୟ ଓ ତତ୍ସଙ୍ଗଗଣେ ପ୍ରବେଶ
ପ୍ରଣତ ହୋଇ ଛିଡ଼ାହେବାର ।]

ଚ-ନ୍ଦ୍ରୋ-ଦ-ୟ !

ଗୁରୁ—ପୃଥ୍ୱୀ ଜେବେ ଜ୍ୟୋତ୍ସ୍ନାମୟ !

ବଟୁ—ଆଉ ତା କହିବାକୁ !—ବସିବେ ନା ?

ରଜା—ନା ନା—ଆରମ୍ଭ ହେଉ ।

ବଟୁ—ହୁଁ ଆଉ କଣ—ଦଅ ନାଚ,—ମୋତେ ଏକା ସନ୍ତୁଷ୍ଟ କରାବ !

ନର୍ତ୍ତକେ—( କେତେ କ୍ଷଣ ବାଦ୍ୟସହ ସୁରୁଚିସମ୍ପନ୍ନ ନୃତ୍ୟ କରି ଗୀତ । )

କାଶ୍ମୀରୀ ଝମଟା

ମାତିଛୁ ଆନନ୍ଦେ ଆଜ ଶ୍ରୀକ୍ଷେତ୍ର ପୁରଗୋପମ—
ଆନନ୍ଦର କୋଳାହଳ ଉଠୁଛି ରେ—ଘନ ଘନ !!

କି ଧନୀ କି ଦୁଃଖୀ ଲୋକ ଭୁଲିଛନ୍ତି ତାପ ଶୋକ,
ଜବେ ଭବ-ମାୟା-ମୋହ ଉପାଡ଼ ନାହିଁ ଏ ମନ । ୧ ।

ସୁଖସିନ୍ଧୁ-ଘୋର-ରୋଳ ସ୍ୱର୍ଗେ ଯାଇଁ କରେ ଗୋଳ,
ଛନ୍ଦିତ ଦେବସମାଜ ଜଗତେ ହେବେ ଜନମ । ୨ ।

ସବେଁ ନୀଳାଚଳବାସୀ          ଅତୁଳ ସୁଖ ପ୍ରକାଶି,
ଗାଉଛନ୍ତି ହରି-ନାମ କମ୍ପୁଛି ଦେବ-ଭବନ । ୩ ।

ଭକ୍ତବନ୍ଧୁ ଜଗନ୍ନାଥ          ଅଖିଳ ବ୍ରହ୍ମାଣ୍ଡ-ନାଥ,
ଏକା ଭକ୍ତ ତ୍ରିଭୁବନେ ଧନ୍ୟ ହେ ପୁରୁଷୋତ୍ତମ । ୪ ।

ବନ୍ଧୁ — ଧନ୍ୟ ଧନ୍ୟ — ଅତି ସୁନ୍ଦର ! (ପଞ୍ଚମୁଦ୍ରା ନିକ୍ଷେପ ।)

ପଟକ୍ଷେପଣ ।

———

ଦ୍ୱିତୀୟ ଦୃଶ୍ୟ । ଶୟନାଗାର ।

[ ପୁରୁଷୋତ୍ତମଦେବ ପଲ୍ୟଙ୍କୋପରି ଶୟନ ]

ରାଜା — [ ହଠାତ୍ ଚମକି ଉଠି ଚକ୍ଷୁ ମର୍ଦ୍ଦନ କରି ] ଓଃ ! କି ଦୁର୍ଦ୍ଦୈବ ! କି ଭୟାନକ ସ୍ୱପ୍ନ ! ଭଗବାନ୍ ଏ ଦୀନକୁ ଏ ଭୟାନକ ହସ୍ତରେ ପକାଇ କାହିଁକି ପୀଡ଼ା ଦେଉଛନ୍ତି ? ଅଥବା ଯାହା ମନରୁ ବିସ୍ମୃତ ହେବା ନିମନ୍ତେ ଯଥାସାଧ୍ୟ ଚେଷ୍ଟା ହେଲା, ମନ କି ଦୁଷ୍ଟ-ବୃତ୍ତିମୂଳରେ ପଡ଼ି ତାହା ଆଉ ଭୁଲିବ ନାହିଁ ! କି କଷ୍ଟ ! ନାହିଁ ଶାନ୍ତି ! ଭଗବନ୍ ପଦ୍ମାବତୀ କି ଚଣ୍ଡାଳ ହାତରେ ନିପଡ଼ନ୍ତା; ସେ ଚଣ୍ଡାଳରେ ସେବନ କରିବ, ନିଜ ପିତାର କର୍ମରୁ ଘୋର ନରକ-ଯନ୍ତ୍ରଣା ସହ୍ୟ କରିବ, ଏହା ଆମେ କାହିଁକି ସ୍ୱପ୍ନରେ ଦେଖିବୁଁ ?— ପୁଣି ପଦ୍ମା କାନ୍ଦି କାନ୍ଦି କଣ ନା ସେ ଆମର ପାଇଁ ଫୁଲ ଗୁନ୍ଥି କେତେ ପିନ୍ଧାଇ ଦେଇ କେଡ଼େ ସରାଗରେ ଆଦର କରୁଛି !— ତା ମୁଖରେ ଚୁମ୍ବ ଦେଉଁ ଦେଉଁ ହଠାତ୍ ସମସ୍ତ ଲୋପ ହେଲା, ଦେଖୁ ନା ହାତରେ ଖଡ଼୍ଗ ! — ପୁଣି ପଦ୍ମାବତୀ, ପୁଣି ଚଣ୍ଡାଳୁଣୀ ! କି ଆପଦ ! ଏ ଭୟାନକ ସ୍ୱପ୍ନଟି ସାମାନ୍ୟ ଚିନ୍ତାର ଫଳ ନୁହେଁ ! ସେହି କାଞ୍ଚୀକାବେରୀ ଯୁଦ୍ଧ, ସେହି ଜଗନ୍ନାଥଦେବଙ୍କର ମହିମା, ସେହି ପଦ୍ମାବତୀ ଆଉ ସେହିପରି ! / ଏଣେ ସଂଗ୍ରାମ, ତେଣେ

ପ୍ରେମାଳାପ ! ଏକ ବଧାଇ ! ତୁଥା ବଡ଼ମୁନାରେ ହୃଦସ୍ଥ ଦଗଧ ଭଲେ ଯେବେ ଆନନ୍ଦ ଲାଭ ହୁଏ, ଆମର ଚନ୍ଦ୍ରିକ ସ୍ତ୍ରୀଭାର ! ଧା ପଦ୍ମାବତ ! ଓଡ଼ଶାରଜାଙ୍କୁ ନନ୍ଦା କରବ ନାହିଁ—ସେ ଯେ ତୁମକୁ ମନ ସନ୍ତରରେ ଦେଖିଯାରେ, ହୃଦ ଫେଡ଼ ଦେଖାଇବାର ହୋଇଥିଲେ ଦେଖିଥାନ୍ତ—ହନୁମାନର ସର୍ବାଙ୍ଗ ରାମନାମରେ ପରପୂରତ !) କନ୍ତୁ କ ହେବ ? ପଦ୍ମାବତ, ଦୋଷ ତୁମ ପିତାର, ସେ ଜଗନ୍ନାଥଦେବଙ୍କୁ ଅବହେଳା କର ନ ଥିଲେ ସସାର ସୁଖମସ୍ତ ହୋଇଥାନ୍ତା ! ଚେ ମନ୍ତ୍ରିଙ୍କ ମାନସ ! ପୁଣି ସେ କଥା କାହିଁକ ମନକୁ ଆଣୁଛ ? ସସାରରେ କ ପଦ୍ମାବତୀଠାରୁ ସୁନ୍ଦରୀ ରମଣୀ ନାହିଁ ? ଏକା ପଦ୍ମାବତୀ କ ପଦ୍ମାବତୀ ? ତାହାର ଗଠନ କ ଏକା ତାହାରଠାରେ ! ମନ୍ତ୍ରିଙ୍କ ଘରଠାରୁ କେତେବେଳେ କଏ ନ ଆସେ ? ତାଙ୍କ ଘରେ କେତେ ଅପୂର୍ବ ସୁନ୍ଦରୀ ନ ଥିବେ ? ସେ ପ୍ରସାଦ ଉପରେ ଯେ ଆଜ ଦୁଇପ୍ରହର ବେଳେ ଛୁଡ଼ା ହୋଇଥିଲ, ତାକୁ ଏକାବେଳକେ ପଦ୍ମାବତୀ ବୋଲି ଦେଖି ମୋହିତ ହୋଇଗଲୁ ! ଛି ଛି ! ଏ ଦୁର୍ବଳତା କ୍ଷମଣୀୟ ନୁହଇ ! ସେ ରଜାଙ୍କ-ଠାରୁ ଆଜ୍ଞା ପାଇଛନ୍ତି—ସେ କ ଚଣ୍ଡାଳକୁ ନ ଦେଇ ଏତେଦନ ରଖିଥିବେ ?—ରଖିଥିଲେ ତାଙ୍କର ଆଉ ଆଜଯାଏ ପ୍ରାଣସହାର ହୋଇ ନ ଥାନ୍ତା ?—ମାତ୍ର କ ଆଶ୍ଚର୍ଯ୍ୟ ! ନଗରର ସମସ୍ତେ ପଦ୍ମାବତୀ ପକ୍ଷରେ ଆଉ ଆମର ଅଯୋଚତ ନନ୍ଦା କରୁଛନ୍ତି !—ମାତ୍ର ଆମେ ପଦ୍ମାକୁ ଚଣ୍ଡାଳକୁ ନ ଦେଇ ଆପେ ବିବାହ ହୋଇ-ଥିଲେ ପୁଣି ସେହିମାନେ କ ଆମର ମହତ୍ତ୍ୱ ସାର ନ ଆନ୍ତେ ?—ଧନ୍ୟ ଲୋକେ ! କଏ ତୁମର ରଜା ହେବାକୁ ଇଚ୍ଛା କରେ ? ଅବିଶ୍ୱାସୀ !—(କଥିତ୍କାଳ କର୍ଣ୍ଣ ଦେବେଣି) ଏକ ? ଅରେ ଶ୍ରବଣ କର—ଆହା ! କ ମଧୁର ସ୍ୱର ! କ ମଧୁର ତାନ !

ନେପଥ୍ୟେ—ବେହେଲାର ପ୍ରତିଧ୍ୱନି ଗୀତ ।

ରାଗିଣୀ ଭୈରବୀ । ତାଳ ଅଡ଼ଖେମଟା ।

ଝୁରି ମରିବାକୁ ପ୍ରିୟ ସଙ୍ଗ, ବନ୍ଧୁ ଜଣକୁ ଏ ଭବେ !
ପାଷାଣ ପ୍ରାୟେ ଅବୋଧ ପୁରୁଷେ କେ ସର୍ବେ !!

ପଢନ୍ତେ ଯାକୁ ବଲ୍ଲୁ, ତା ପାଇଁ ଚନ୍ଦ୍ରେ ଗଲୁ,
ଚନ୍ଦ୍ରାନୁଣି, ମଣିହାର ଭେକ-ଗଳେ ଶୋଭେ ! ୧ ।

ଧନ୍ୟ କୁମୁଦିନୀଧନୀ, ଧନ୍ୟ ହେ ରୂ ପଙ୍କଜନୀ,—
ଅଦ୍ଭବ୍ୟ ପାର୍ଥିବ ଧବେ ସୁଖ କେବା ଲଭେ ! ୨ ।

ଯେ ଗୁଣୀ ପୃଥ୍ୱୀରେ ଥିଲା, ସେ ତୋ ମୃତ୍ୟୁ ଘଟାଇଲା,
— ବିରହ-ସର୍ପ-ଦଂଶନ କୋମଳ ପ୍ରାଣ ନାଶିଲା,
ବିଧାତାକୁ ପଦ୍ମାବତୀ ନାମ ଏକା ଜାବେ ! ୩ ।

ରାଜା— ହା ସୁମଧୁର ଧ୍ୱନି ! ରେ ମଧୁର ସଙ୍ଗୀତ ଲହରୀ ! ଆଉ ଥରେ ଏ କର୍ଣ୍ଣ ଶୀତଳ କରି ମନକ୍ଷେତ୍ରରେ କ୍ରୀଡ଼ା କର—ବିକଳମନ କିଞ୍ଚିତ୍ ଶାନ୍ତ ହେବ ! ଆହା ! ଏ ସଙ୍ଗୀତ ପୂର୍ବେ ଶୁଣିଥିଲି ପରି ଅନୁମାନ ହେଉଛି ! (କ୍ଷଣ ଚିନ୍ତା) ହଁ, ଦୁଃସ୍ୱପ୍ନ ପୂର୍ବରେ କାଞ୍ଚୀଦେଶରେ ଏ ସ୍ୱର ଶୁଣିଥିଲୁଁ ! ହା ! ପ୍ରକୃତି କି ଅସୀମ ସାହସିକତାର କାର୍ଯ୍ୟ ହେଉଛି ! ନଗରବାସୀ ଲୋକେ ପଦ୍ମାବତୀ ନିମନ୍ତେ କାନ୍ଦୁଛନ୍ତି; ଦେଶବାସୀ ପଦ୍ମାବତୀ ନିମନ୍ତେ ଆମର ନିନ୍ଦା କରୁଛନ୍ତି ! ଆମେ ମଧ୍ୟ ପଦ୍ମିନୀଙ୍କ ଭଲ ପାଇଁ ପାଇଁ ପ୍ରଚଣ୍ଡ ତାପରେ ସନ୍ତାପିତ କରି ମାରିଲୁଁ !! ହା ! ଏବେ ମଧ୍ୟ ମନ ବିକଳ ହେଉଛି !—ଯାଃ—ଗତସ୍ୟ ଶୋଚନା ନାସ୍ତି !—ହାୟ—

ନେପଥ୍ୟେ—ମଣିମା !

[ ଦ୍ୱାରୀର ପ୍ରବେଶ]

ରାଜା—ଦେଖ, କିଏ ଏତେ ରହିରେ ଗୀତ ଗାଉଛି, ତାକୁ ଡାକି ଆଣ ।

ଦ୍ୱାରୀ—ଯେ ଆଜ୍ଞା !

[ ଦ୍ୱାରୀର ପ୍ରସ୍ଥାନ ଓ କ୍ଷଣିକପରେ
ଭଦ୍ରାସହ ପୁନରାଗମନ ।

ଭଦ୍ରା—(ଅବନତସ୍ୱରେ ମସ୍ତକ ନୁଆଁଇ ଦଣ୍ଡାୟମାନା । )

ରାଜା—ଏହି ରମଣୀ ଗୀତ ଗାଉଥିଲେ ?—ରମଣୀକଣ୍ଠ ପରି ଶୁଭୁଥିଲା ।

ଦ୍ୱାରୀ—ମହିମା !

ରାଜା—ଭଲ, ତୁମେ ଯାଅ ।

[ ଦ୍ୱାରୀର ପ୍ରସ୍ଥାନ ।

ସେହି ବୈଠକରେ ଉପବେଶନ କର । ତୁମେ ଏତେ ରାତିରେ ଏଠି ଗୀତ ଗାଉଥିଲ ?

ଭଦ୍ରା—(ଉପବେଶନାନ୍ତେ) ମହିମା !

ରାଜା—ତୁମର ନାମ ?

ଭଦ୍ରା—ଭଦ୍ରା ।

ରାଜା—ଘର ?

ଭଦ୍ରା—କାଞ୍ଚୀଦେଶ ।

ରାଜା—(ସାଶ୍ଚର୍ଯ୍ୟ) କାଞ୍ଚୀଦେଶ !—ଏଠାକୁ କିପରି ?

ଭଦ୍ରା—( କରଯୋଡ଼େ ) ମହାରାଜ ! ତୁମ୍ଭ ଚକ୍ଷୁଁପାଶରେ ନାହିଁ । ପଦ୍ମାବତୀଙ୍କର ଆମେ ଗାୟିକା, ଜଣେ ଅନ୍ତରଙ୍ଗା ବୈଷ୍ଣବୀ । ତାଙ୍କର ଅନ୍ନରେ ଓ ତାଙ୍କର କୃପାରେ ଆଜନ୍ମ ପ୍ରତିପାଳିତା । ସେ ବନ୍ଦୀ ହୋଇ ଆସିଲାରୁ ଆମେ ଓ ତାଙ୍କର ସଖୀଦ୍ୱୟ ଅଲକ୍ଷିତଭାବରେ ପଛେ ପଛେ ଆସିଚୁଁ । ଏଠାରେ ଆସି ଶୁଣିଲୁଁ ଯେ ପଦ୍ମାବତୀଙ୍କି ଚଣ୍ଡାଳ ସଙ୍ଗରେ ବିଭା ଦେବା ପାଇଁ ତୁମ୍ଭରୁ ଆଜ୍ଞା ହୋଇଚନ୍ତି । ମାତ୍ର ସେ କେଉଁ ଚଣ୍ଡାଳ ହାତରେ ପଡ଼ିଲେ ତାହା ସ୍ଥିର କରିପାରିଲୁଁ ନାହିଁ; ମନ୍ତ୍ରୀଙ୍କି ପଚାରିଲେ ମଧ୍ୟ ସେ କହିଲେ ନାହିଁ । ମହାରାଜ !

ସଖୀଦ୍ୱୟ ବିକଳ ହୋଇ କେଉଁଆଡ଼େ ଗଲେ କହି ନ ପାରୁଁ !
ଆମେ ଏକାକିନୀ ଏ ଶ୍ରୀ କ୍ଷେତ୍ରରେ ତାଙ୍କର ଗୁଣ ଓ ଦୁଃଖ ଗାଇ
ବୁଲୁଚୁଁ—ପାଇଲେ ପାଇବୁଁ, ନୋହିଲେ ଏହି ସମୁଦ୍ର !!!
(ନେତ୍ରଜଳ ବସ୍ତ୍ରାଞ୍ଚଳେ ପୋଛିବା)

ରାଜା—ଆହା ! ତୁମେମାନେ କେବଳ ପଦ୍ମାବତୀର ଉପଯୁକ୍ତା ଅନୁସ୍ମରଣୀ !

ଭଦ୍ରା—ମହାରାଜ ! ଆଉ କି କହିବୁଁ ? କହିଲେ ଅବିଶ୍ୱାସ କରିବେ, ପଦ୍ମାବତୀ ତୁମ୍ଭ ପ୍ରତି ଯେତେଦୂର ଅନୁରକ୍ତା ଥିଲେ, ତୁମ୍ଭେ ତାହା ସବୁ କିଛି ଜାଣିପାରିଲେ ନାହିଁ ! ସେ ଘୋରଦୁଷ୍ଟ, ଚଣ୍ଡାଳ ହାତରେ ପଡ଼ିବେ ବୋଲି ସେ ଘୋର ଅପମାନବୋଧକ ଯନ୍ତ୍ରଣା, ସୈନିକ କେତେଜଣ ଯେତେବେଳେ ଗଛରୁ ଡାଳ କାଟିଲେ—ମା ବାପ କୋଳରୁ ଛଡ଼ାଇ ଆଣିଲେ, ଆହା ! ତେବେହେଁ ସେ ଚଣ୍ଡାଳୁଣୀ ତୁମ୍ଭଙ୍କର ନିନ୍ଦା କଲାନାହିଁ ! ଆଉ ତୁମ୍ଭ—(ନେତ୍ରଜଳ ତ୍ୟାଗ ।)

ରାଜା—ଭଦ୍ରେ ! ତୁମେ କି ସେହି ହେତୁରୁ ଆମର ନିନ୍ଦା କରୁଥିଲ ? ଆଉ ଇତିପୂର୍ବେ କାଞ୍ଚୀଦେଶରେ ଆମମାନଙ୍କର ଛାଉଣୀ ନିକଟରେ ପ୍ରଥମ ଯୁଦ୍ଧ ପରେ ରାତିରେ ଗୀତ ଗାଇ ନିନ୍ଦା କରୁଥିଲ ?—

ଭଦ୍ରା—(ସ୍ୱଗତ) ତା ଏତେବେଳେ ପ୍ରକାଶ କରିବାରେ କାର୍ଯ୍ୟ ନାହିଁ—ପ୍ରଭୁ ଜାଣନ୍ତୁ, ଆମର ଯତ୍ନ ସଫଳ ହେଲେ ହେଇପାରେ ।

ରାଜା—ମାଫ ଭଦ୍ରେ ! ଆମେ ଦୋଷୀ ନୋହୁଁ । ଆମେ ପଦ୍ମାବତୀଙ୍କି ଭଲ କରି ଜାଣୁଁ ! ପଦ୍ମାବତୀ ଯେପରି ସରଳା ଓ ଗୁଣବତୀ, ତା କିଛି ଛପା ନାହିଁ; ମାଫ କି ହେବ କପାଳଲିଖନ !

ଭଦ୍ରା—ଆମମାନଙ୍କର ମଧ୍ୟ ତାଙ୍କର ହେତୁଁ ଏ ଦଶା !

ରାଜା—ସେହି ହେତୁଁ ? ଭଦ୍ରେ ! ସେ ପ୍ରତିଜ୍ଞା ନୋହିଥିଲେ ଆମେ ପଦ୍ମାବତୀଙ୍କି ବିବାହ ହେବା ନିମନ୍ତେ କୃତସଙ୍କଳ୍ପ ହୋଇ ଗଜ-

ଥିଲୁଁ । (ଆଉ ଆମେ ଏ ଜନ୍ମରେ ବିବାହ ହେବୁଁ ନାହିଁ । ଯେଉଁ
ପଦ୍ମାବତୀଙ୍କି ଛାଡ଼ି ଘୋର ଜଙ୍ଗଲରେ ପଡ଼ିଛୁଁ ; ଯାହାଙ୍କର ଆମ ପ୍ରତି
ପବିତ୍ର ପ୍ରେମ ଶୁଣି ଶରୀର ଜଳି ଯାଉଛି, ସେହି ଆମର ଇହଜନ୍ମରେ
ଏକମାତ୍ର ପତ୍ନୀ ଥିଲେ ! —ଆଉ ନା, ଭଦ୍ରେ ! ତୁମେ ଏବେ
ଆସ, ମାତ୍ର ଦେଖ ଆଉ ଆମର ନିନ୍ଦା କରି ଗୀତ ଗାଇ ଏ ଦେହ
ଜ୍ୱଳାଇବ ନାହିଁ, ଏତିକି ବିନୟ ? (ଦୀର୍ଘନିଃଶ୍ୱାସ ପ୍ରକ୍ଷେପଣ ।)

ଭଦ୍ରା—(ସ୍ୱଗତ) ମନ ! ଆଶ୍ୱସ୍ତ ହୋ । ସଖି ପଦ୍ମା ! କିଛି ଦୁଃଖ ନାହିଁ !
(ତୋ ଧନ ତୋର; ଯେଉଁ ଶ୍ରୀକୃଷ୍ଣ ହରାଇ ବସିଥିଲୁ ସେ ଏବେ ତୋ
ଚରଣ ତଳେ ପଡ଼ିବାକୁ ପ୍ରସ୍ତୁତ । ମୋର ମନ ଆଶା ପୂର୍ଣ୍ଣ ହେଲା !
ଦୂର ହୋ ଭୟ ! ଏତେବେଳେ ତୋ ସଙ୍ଗେ କି କଥା ? —
କାଳିଆସୁନା-ନାହିଁ ଭାବନା !)

ରାଜା—କି ଚିନ୍ତା କରୁଛ ?

ଭଦ୍ରା—ନାହିଁ, ଚିନ୍ତୁଥିଲି ଲୋକଙ୍କୁ ଏଡ଼େ କ୍ରୋଧ ହେବୁଁ କେତେ କଷ୍ଟ ଓ
ଅନୁତାପ ସହିବାକୁ ହୁଏ ! (ଆନନ୍ଦ ଏତିକି ଯେ ପ୍ରଭୁ ପଦ୍ମାବତୀଙ୍କି
ତୁଚ୍ଛ ବୋଲି ଚଣ୍ଡାଳ ହାତରେ ପଠେଇ ନାହାନ୍ତି । ପ୍ରଭୁ ତାଙ୍କୁ
ଭଲ ପାଉଥିଲେ ଶୁଣି ମନ କେତେବେଳେ ହସୁଚି ପୁଣି କେତେ-
ବେଳେ କାନ୍ଦୁଚି !)

ରାଜା—କାନ୍ଦେ କାହିଁକି ?

ଭଦ୍ରା—କାନ୍ଦୁଚି, ଆଜ ସେ ରାଣୀ ହୋଇଥିଲେ ଆମେମାନେ କେତେ ଭାଗ୍ୟରେ
ଫେନ୍ତୁ ନ ଥାନ୍ତୁଁ ! ଆଜ ପ୍ରଭୁ ଏ ରାଜପ୍ରାସାଦରେ କେତେ ଆମୋଦ
ଲଗି ରହୁ ନ ଥାନ୍ତା ! ଆଜ କାଞ୍ଚୀରାଜା ମଧ୍ୟ ଜଗନ୍ନାଥଙ୍କ ପାଦତଳେ
ପଡ଼ିଥାନ୍ତେ—ସେ ସବୁ ତାଙ୍କର ଏକମାତ୍ର କୋମଳ ସନ୍ତାନ !—
ଏ ସବୁ ହରେଇ ବସିଛୁଁ ! (ଲୋତକ ତ୍ୟାଗ ଓ ଅଞ୍ଚଳେ
ପୋଛିବା ।)

ରାଜା—( କ୍ଷଣକାଳ ନମ୍ରମୁଖ ଆଉ ଦୀର୍ଘନିଃଶ୍ୱାସ ତ୍ୟାଗ କରି ) ଭଦ୍ରେ ! ଆଜି ଏହି ସ୍ଥାନରେ ଲୁଣ୍ଠର କୁହା ଦିଅ ନାହିଁ—ଆମର ମନ ନିତାନ୍ତ ଗ୍ଲାନି ହୋଇ ଯାଉଛି । ତୁମେ ବର୍ତ୍ତମାନ ଅସ—ଆମେ ଟିକଏ ବିଶ୍ରାମ କରୁଁ । (ଭଦ୍ରାର ହାତ ଧରି ବିଦାୟ ଦେଇ ପୁନଃ ଶୟନ । )

[ ଭଦ୍ରାର ପ୍ରସ୍ଥାନ ।

ଯବନିକାପତନ ।

---

ତୃତୀୟ ଦୃଶ୍ୟ ।

ଜଗନ୍ନାଥ-ମନ୍ଦିରର ସମ୍ମୁଖଭାଗ

[ ଶଙ୍ଖ, ଘଣ୍ଟା ଓ ତୂରୀରବ; କେତେଜଣ ପଣ୍ଡାଏ ମିଳି ହରି-ବୋଲ ପକାଇ ପକାଇ ଜଗନ୍ନାଥ ଦେବଙ୍କୁ ରଥକୁ ପହଣ୍ଡି କରି ନେଉଅଛନ୍ତି; ଆଗେ ଆଗେ ପୁରୁଷୋତ୍ତମ ଦେବ ସ୍ୱର୍ଣ୍ଣସମ୍ମାର୍ଜ୍ଜନୀ ଧରି ପହରୁଅଛନ୍ତି; ଦୁଇପାର୍ଶ୍ୱରେ ଅନେକ ନାଗରିକ ଆନନ୍ଦେ ହରିବୋଲଧ୍ୱନି କରୁଅଛନ୍ତି ଓ ନେପଥ୍ୟରୁ ସ୍ତ୍ରୀଲୋକଙ୍କର ଘନ ଘନ ହୁଳହୁଳି ଧ୍ୱନି । ]

[ ହଠାତ୍ ମନ୍ତ୍ରୀ ବିଦ୍ୟାନିଧିଙ୍କର ପଦ୍ମାବତୀ ଓ ସଖୀଗଣଙ୍କ ପ୍ରବେଶ ଓ ତଦ୍ଦର୍ଶନେ ସମସ୍ତ ଗୋଳମାଳ ବନ୍ଦ ଓ ସମସ୍ତେ ନିଃସ୍ତବ୍ଧ ଦଣ୍ଡାୟମାନ ।

ରାଜା— (ସବିସ୍ମୟ ଓ କୋପାନ୍ୱିତ) ମନ୍ତ୍ରିନ୍ ! ଏ କି ? ଏତେବେଳେ ତୁମର ପଦ୍ମାବତୀଙ୍କି ସଙ୍ଗେ ଘେନି ତାହାର ହାତ ଧରି ଆସିବାର ଅଭିପ୍ରାୟ ? ନାରକ ! ତୁମର ଏତେଦୂର ଆସ୍ପର୍ଦ୍ଧା ଯେ କି ରାଜାଙ୍କର ଆଜ୍ଞା ଅନୁସାରେ ଗୋପନେ ଗୋପନେ ଅମାନ୍ୟ କରି ଶେଷେ ଏହି ପୁଣ୍ୟସ୍ଥାନରେ ହତଭାଗିନୀର ହାତ ଧରି ନିର୍ଲଜ୍ଜମୁଖ

ଜଗତ୍ପାତା ପ୍ରଭୁଙ୍କ ସମ୍ମୁଖରେ ଦେଖାଇବା ନିମନ୍ତେ ଉପସ୍ଥିତ ହୋଇଛ ? ଏ ପୁଣ୍ୟସ୍ଥାନ—ତାହିଁର ବର୍ତ୍ତମାନ ସମା ତଥାଗତ । ଉଚିତ ବିଶ୍ୱର ପକ୍ଷେ ହେବ ।—ନାରକି ! ଏ ସ୍ଥାନ ତ୍ୟାଗକର—ସେ ନିଷ୍ଠ୍ୱିଙ୍କ ମୁଖ ଏଠାରୁ ଅନ୍ତର କର !

ପଦ୍ମା—(ଥରେ ବିକ୍ରମକର୍ଣ୍ଣ ରାଜାଙ୍କ ମୁଖପ୍ରତି ସମ୍ପେହ ଦୃଷ୍ଟିପାତ କରି ବିଷାଦ ଓ ଭୟରେ ଅଧୋବଦନ । )

ମନ୍ତ୍ରୀ—(ଯୋଡ଼କରେ) ମହାରାଜ ! କ୍ଷମା କରନ୍ତୁ ।—ଆଗେ ଶାନ୍ତ ହୁଅନ୍ତୁ; ପାଛ ଉପରେ ବକ୍ତବ୍ୟ ପ୍ରକାଶ କରିବ । ଅଧୀନ ରାଜାଙ୍କ ପ୍ରତିପାଳନ କରି ଏତେଦିନ ଯେଉଁ ଅନୁଗ୍ରହ ପାଇ ଆସିଛୁ, ତାହା ଏଠାରେ କାହାରିକୁ ଅଜ୍ଞାତ ନାହିଁ । ଆଜ ଯେ ବୃଥା କୌଣସି ଗୁରୁତର କାରଣ ଅବର୍ତ୍ତମାନରେ ପ୍ରଭୁଙ୍କର ସ୍ଥିରାଜ୍ଞା ଅବହେଳା କରି ଉଦ୍ଭିନ୍ନରେ ଏତେଦିନ ବସି ଏବେ ନିଷ୍ଠ୍ୱିଙ୍କ ମୁଖ ଦେଖାଇବା ନିମନ୍ତେ ସମ୍ମୁଖ ଆସିଛୁ ଏହା ନିତାନ୍ତ ଅସଙ୍ଗତ, ମଧ୍ୟ ଅସମ୍ଭବ । ଆମ୍ଭ ବିଦ୍ୟାଭ୍ୟାସ ଉତ୍ତମରୂପେ ଜାଣନ୍ତି; ସେ କପଟ ଅଭ୍ୟାସ ଓ ନିଷାଦ ଲୋକ ଆମ୍ଭର ତାହା କଦାଚିତ୍ କାଳେ ଅବଗତ ନାହିଁ; ଆଉ ଆମ୍ଭଙ୍କର ଅବର୍ତ୍ତମାନରେ ରାଜ୍ୟର ଯେପରି ଭାବରେ ଶାନ୍ତି ରକ୍ଷିତ ହୋଇଛି ତାହିଁର ଆମ୍ଭ କେବଳ ଏକମାତ୍ର ସାକ୍ଷୀ । ଜଗତ୍-ସଂସାର ଚିରକାଳପାଇଁ ସୃଷ୍ଟ ହୋଇନାହିଁ, ପୁନଶ୍ଚ ଜଗତରେ କୌଣସି କଥା ଚିରସ୍ଥାୟୀ ନୁହେ, ଯେତେବେଳେ ଲୋଭ, ହିଂସା, ଦ୍ୱେଷାଦି ନାନାପ୍ରକାର ପାପପ୍ରବୃତ୍ତିମାନ ଅହରହ ଲୋକଙ୍କୁ ଦଂଶନ କରି ଖାଦ୍ୟ ବିଷଜ୍ୱାଳାରେ ଦଗଧ କରୁଛି, ସେତେବେଳେ ମହାରାଜ ! କେଉଁ କଥା ପାଇଁ କାହାର ଇଚ୍ଛାପୂର୍ବକ ଅନ୍ୟାୟ କରିବାକୁ ମତି ବଳିବ ?—ଯାହାର ବଳିବ ସେ ପାଷଣ୍ଡରୁ ପାଷଣ୍ଡ ! ମହାରାଜ ! ଯେଉଁ ସୁକୁମାର ଲତା ଊର୍ଦ୍ଧ୍ୱମୁଖରେ ବନସ୍ଥଳୀରେ ବଢ଼ୁଥାଏ, ତାହାର ଜୀବନ କି କ୍ଷୁଦ୍ରଗୁଳ୍ମ ନିମନ୍ତେ, ନା ଯେଉଁ ଲକ୍ଷ୍ମୀ କ୍ଷୀରୋଦ-

ମନ୍ଦିରରୁ ବହିର୍ଭୂତା ହେଲେ ତାଙ୍କର ଲକ୍ଷ ମର୍ତ୍ତ୍ୟଲୋକେ ଆମେ
କାହିଁ ଅମାନ୍ୟ କରିନାହାନ୍ତି । ନଗରସ୍ଥ—ରାଜ୍ୟସ୍ଥ ସମସ୍ତ ଲୋକେ
ଛାମୁଙ୍କର ସେହି କଠୋର ଆଜ୍ଞାରେ ଯତ୍ପରୋନାସ୍ତି ଦୁଃଖିତ ହୋଇ
ପଦ୍ମାବତୀଙ୍କ ନିମନ୍ତେ ଅଶେଷ ପ୍ରକାର ଶୋକ ଓ ଭଗବାନଙ୍କଠାରେ
ପ୍ରାର୍ଥନା କରୁଛନ୍ତି । ଯେଉଁ କୋମଳପ୍ରାଣା ଅଶେଷରୂପଲାବଣ୍ୟ-
ସମ୍ପନ୍ନା ବିବିଧସଦ୍‌ଗୁଣବିସ୍ତାରିଣୀ ପଦ୍ମାବତୀ କେବଳ ଏକ ରାଜ-
ପର୍ଯ୍ୟଙ୍କୋପଯୁକ୍ତା, ଯେଉଁ ନବନୀତ—ଯେଉଁ ଅମୃତସ୍ୱାଦୁ କ୍ଷୀର
ଏବା ଧନିଲୋକଙ୍କର ରସନା ତୃପ୍ତ କରିବା ନିମନ୍ତେ ସୃଷ୍ଟ ହୋଇଛି,
କେବେ କି ତାହା ସାମାନ୍ୟ ଚଣ୍ଡାଳ-ଘରକୁ ନୀତ ହୋଇଥାଏ ?
ମହାରାଜ ! କ୍ରୋଧଭରେ କଠିନ ଆଜ୍ଞା ଦେଇଥିଲେ, କ୍ରୋଧବଶରୁ
ହଠାତ୍ ଯେଉଁ କଠିନ ପ୍ରଚଣ୍ଡ ମୁଖରୁ ନିଃସୃତ ହୋଇଥିଲା ତାହା
ନିତାନ୍ତ କଠିନ ବୋଲି ବୋଧ ହେଲେ ମଧ୍ୟ ରାଜୋପଯୁକ୍ତ କାର୍ଯ୍ୟ
କରି ଛାମୁ ତାହା ଅନୁପୂର୍ବକ ରକ୍ଷା କରି ଆସିଛନ୍ତି । ମାତ୍ର ମହାରାଜ !
କ୍ଷୁଦ୍ରବୁଦ୍ଧି ପ୍ରତି ଯେଉଁ ଆଜ୍ଞା ପ୍ରଦତ୍ତ ହେଲା, ଆଜ୍ଞା ପାଳନ କରିବା
ନିମନ୍ତେ ଯେଉଁ ଶରୀର ଛାମୁରେ ବିକ୍ରୀତ ହୋଇଛି, ସେହି ଦେହକୁ
ଯେଉଁ ଆଜ୍ଞା ଛାମୁ ଶ୍ରୀମୁଖରୁ ସଭା ବିଦ୍ୟମାନେ ପ୍ରଦତ୍ତ ହେଲା, ଯେଉଁ
ଆଜ୍ଞା ଶୁଣି ସେହି ସଭାସ୍ଥ ସମସ୍ତ ସଭ୍ୟମାନେ ବିମର୍ଷଭାବ ଧରିବାରୁ
ଛାମୁ ଶୀଘ୍ର ଶୀଘ୍ର କରି ସଭା ଭଙ୍ଗ କଲେ, ମହାରାଜ ! ଦୀନ ସେ
ଆଜ୍ଞା ଏତାବତ୍ ସମସ୍ତ ଲୋକଙ୍କ ବିରୁଦ୍ଧ ହେଲେ ମଧ୍ୟ ପ୍ରତିପାଳନ
କରିବା ନିମନ୍ତେ ଭାବି ଭାବି ଏତେଦିନ । ଆଜି ଅବସର ମିଳିଛି;—
ମଧ୍ୟ ପଦ୍ମାବତୀ ଛାମୁକୁ ଅଗହୁଁ—ଯେତେବେଳେ ପୂର୍ବେ ସେ
ଏଠାକୁ ଆସିଥିଲେ, ତେତେବେଳୁଁ—ପଛନ୍ଦେ ବରଣ କରି ପରେ
ବିରହାଦି ଯେତେ ଯନ୍ତ୍ରଣା ସହୁଛନ୍ତି ତାହାଶୁଣି ଏ ପ୍ରାଣ ଫାଟି-
ଯାଉଛି । —ଦୟା ନ କରି ରହିପାରି ନାହିଁ ! ଛାମୁ ମଧ୍ୟ ସେହି
ସମୁଦାୟ ଦୁଃଖର କଥା ଶୁଣିଲେ ଯେ ଏକାନ୍ତ ଧୈର୍ଯ୍ୟ ଧରି ରହି-
ପାରିବେ ଏ କ୍ଷୁଦ୍ରବୁଦ୍ଧି ତାହା ବୁଝିପାରିବ ନାହିଁ । ମହାରାଜ ! ଦୀନ

ଉପରୋକ୍ତ କାରଣମାନଙ୍କରୁ ତୁମ୍ଭଙ୍କର ଅମୋଘାସ୍ତ୍ର ଏତେଦିନ ପାଳନ
କରିବାକୁ ଅସମର୍ଥ ହୋଇଚି । ଏବେ ସ୍ୱୟଂ ତୁମ୍ଭେ ଶ୍ରୀହସ୍ତରେ ସ୍ୱର୍ଣ୍ଣ-
ସମ୍ମାର୍ଜ୍ଜନୀ; ସ୍ୱୟଂ କାଞ୍ଚିରାଜା ଏଠାକୁ ଆସି ଉଚିତ ପ୍ରାୟଶ୍ଚିତ୍ତ କରି
ଶ୍ରୀ ଜଗନ୍ନାଥ ଦେବଙ୍କୁ ଏକମାତ୍ର ଜଗତର କର୍ତ୍ତା ମଣି ଭକ୍ତି-
ଭାବରେ ଅଷ୍ଟାଙ୍ଗେ ପ୍ରଣତ ହେବାରୁ ନିଜେ ଜଗନ୍ନାଥଦେବ କାଞ୍ଚି-
ରାଜାଙ୍କ ଅନୁତାପରେ ସନ୍ତୁଷ୍ଟ ଥିବାର ଦେଖାଯାଉଅଛି । ଏହି
ସ୍ନାନପୂର୍ଣ୍ଣମୀ ଦିନ କାଞ୍ଚିରାଜାଙ୍କୁ ସେପରି ଭାବରେ ଦେଖି ଜଗନ୍ନାଥେ
ଯେଉଁ ହସ୍ତିମୁଖ ଧାରଣ କରିଥିଲେ ତହିଁରେ ସେ ଏହିକି କହିଲେ
ଯେ ସେ ସବୁଠାରେ ଅଛନ୍ତି—ତାଙ୍କୁ ନିନ୍ଦା କରି ଅନ୍ୟ କୌଣସି
ଦେବତାଙ୍କ ଦ୍ୱାରା କିଛି ଫଳଲାଭ ହେବନାହିଁ—ସମସ୍ତ ଦେବେ
ତାଙ୍କର ସେବା କରନ୍ତି ଏବଂ ସେ ସର୍ବରୂପୀ ! ଅତଏବ ଅମେଳ
ହେବାର ଗୋଟିଏ ଗୁରୁତର କାରଣ ଅପନୀତ ହୋଇଚି—ଶତ୍ରୁ
ପରାଜୟ ସ୍ୱୀକାର କଲେ ଦୟାର ଉପଯୋଗୀ; ତହିଁକି ପୁଣି
କାଞ୍ଚିରାଣୀ କନ୍ୟାଶୋକରେ ପାଗଳିନୀ ହୋଇ ଏଠାକୁ ସ୍ୱାମୀ
ସହିତରେ ଆସି ଦିବାରାତ୍ର ବିକଳେ ରୋଦନ କରି ତୁମ୍ଭରୁ ଦୟା-
ଭିକ୍ଷାର ଅପେକ୍ଷା କରି ରହିଛନ୍ତି ! ସେ ଯାହାହେଉ, ଏବେ ତୁମ୍ଭେ
ଶ୍ରୀହସ୍ତରେ ସ୍ୱର୍ଣ୍ଣସମ୍ମାର୍ଜ୍ଜନୀ ଏବଂ ଏହି ପଦ୍ମାବତୀ—(ପଦ୍ମାବତୀଙ୍କି
ଟିକିଏ ଆଗକୁ ଆଣି)—ଏବଂ ଏହି ପଦ୍ମାବତୀ ତୁମ୍ଭେ ଶ୍ରୀପଦତଳେ
ଦେବାଧିଦେବ ଜଗନ୍ନାଥଦେବ ଓ ଏତାବନ୍ତ ଲୋକମାନଙ୍କ ସମକ୍ଷରେ
ଦୋଷଶୂନ୍ୟ ପ୍ରତିମାପ୍ରାପ୍ୟ ଯଥାବିହିତ ଦଣ୍ଡ ବା ପୁରସ୍କାର ଘେନିମା
ନିମନ୍ତେ ଦଣ୍ଡାୟମାନା, ତୁମ୍ଭେ ରଖିଲେ ରଖନ୍ତୁ, ମାରିଲେ ମାରନ୍ତୁ !
ଏ ପ୍ରାଣର ଯାହା ଦୋଷ ହୋଇଥିବ, ତହିଁର ଯଥୋଚିତ ଦଣ୍ଡବିଧାନ
କରନ୍ତୁ । ମାତ୍ର ଦୀନ ତୁମ୍ଭଙ୍କର ଆଜ୍ଞାକୁ ମାନ୍ୟ କରି ଶ୍ରୀ ଜଗନ୍ନାଥ-
ଦେବଙ୍କ ସାକ୍ଷାତରେ ଏତାବନ୍ତ ଲୋକମାନଙ୍କ ପକ୍ଷ ହୋଇ
ଉପଯୁକ୍ତ ପାତ୍ରରେ ପଦ୍ମାବତୀଙ୍କି ନିକ୍ଷେପ କରୁଛି—ଦୀନର ଭିକ୍ଷା
ଦେବପଦେ ନିବେଦିତା !!! (ଲେଖକ ତ୍ୟାଗ ।)

ସମସ୍ତ ନାଗରକ ଓ ପାତ୍ର—ଧନ୍ୟ ମନ୍ତ୍ରି—ଧନ୍ୟ ପ୍ରଜାପାଳକ ପୁରୁଷୋତ୍ତମ-
ଦେବ—ମହାରାଜ କିଜୟ (ଆନନ୍ଦ କୋଳାହଳ ।)

ରାଜା—(ଅରେ ମର୍ତ୍ତ୍ୟଖଣ୍ଡରୁ ଅବତୀର୍ଣ୍ଣ ପଦ୍ମାବତୀଙ୍କର ଦକ୍ଷିଣହସ୍ତ ବାମହସ୍ତରେ
ଧରି ତାଙ୍କୁ ସଭାଆଡ଼କୁ ଆଣିବାର ।)

[ ଜୟ ଜଗନ୍ନାଥ ଓ ହରିବୋଲ ଠାକୁରରାଜାଙ୍କର ଜୟ ଓ
ହୁଳହୁଳି ଆଦି ଶବ୍ଦ ଓ ବାଦ୍ୟରେ ପୂର୍ବବତ୍ତ୍ ପଟ୍ଟପରିବର୍ତ୍ତିତ ହୋଇଯିବାମାତ୍ରେ ।]

ଯବନିକା ପତନ ।

ନେପଥ୍ୟେ ଗୀତ ।

ରାଗିଣୀ ଖମ୍ବାଜ । ତାଳ ଆଡ଼ଖେମଟା ।

ଅଜ ରେ ଆନନ୍ଦ ଦିନ ।
କାଞ୍ଚୀ ଓଡ଼ିଶାରାଣୀ ଏବେ ପୂର୍ଣ୍ଣକାମ ମନମୀନ ।

ପୁରୁଷୋତ୍ତମଦେବ, ପଦ୍ମା ହୃଦପଦ୍ମର ଧବ,
ଘଟିଲା ଏକ ସବ, ମୂଳ ଦେବ ଜଗନ୍ନାଥ ଯେଣ । ୧ ।

ପ୍ରୀତରୀ ପଦ୍ମାବତୀ, କାଞ୍ଚୀରାଣୀ, ଜାହ୍ନବୀପତି,
ଭଦ୍ରସଖୀ, ଦେଶବାସୀ—ମୂଳ ମନ୍ତ୍ରୀ ବିଦ୍ୟାନିଧି ଯେଣ ।୨।

ହରବୋଲ ସର୍ବହରେ, ସଜ୍ଜନେ ସୁଖଭରେ,
ଜଗନ୍ନାଥ ନାଥ, ଜୟ ଜୟ ଦେବ ଜୟ ପୂର୍ଣ୍ଣ । ୩ ।

ସମାପ୍ତ ।

———